# ଧର୍ମରାଜ୍ୟ

## ପ୍ରଥମ ଖଣ୍ଡ



ଛୁଇଁ ମଉଣେ ଯେ ବାଳଗାଦ,

ରେ ସର୍ବସ୍ୱର ପ୍ରତିନିଧି ।

# ଧର୍ମରାଜ୍ୟ



## ପ୍ରଥମ ଖଣ୍ଡ

[ ଅସତ୍ୟ ଓ ହିଂସାର ଚରମ ପରିଣତି ]

ରଚନାଶିଳ୍ପୀ:—ଶ୍ରୀ ଲକ୍ଷ୍ମଣ ମିଶ୍ର

ପ୍ରଥମ ମୁଦ୍ରଣ
୧୯୫୦

ଚିତ୍ରକର:—ଶ୍ରୀ ପରମାନନ୍ଦ ନାୟକ,
ପଙ୍କପାଳ ନି: ପ୍ରା: ସ୍କୁଲ
ପୋ: ପଙ୍କପାଳ
କଟକ

ସାରସ୍ୱତ ପ୍ରେସର ଅନୁକୂଳ୍ୟରେ
ଶ୍ରୀ ଲକ୍ଷ୍ମଣ ମିଶ୍ରଙ୍କ ଦ୍ୱାରା
ପ୍ରକାଶିତ

# ବିଷୟ ସୂଚୀ

| ବିଷୟ | ପୃଷ୍ଠା |
| --- | --- |
| ପ୍ରଥମ ଅଧ୍ୟାୟ—ଚଣ୍ଡୀ ଯୁଗର ପୁନରାବୃତ୍ତି | ୧—୮ |
| ଦ୍ୱିତୀୟ ଅଧ୍ୟାୟ—ସରକାରୀ ଦଳ ଓ ବିପକ୍ଷ ଦଳମାନଙ୍କର ସ୍ୱରୂପ ବର୍ଣ୍ଣନା | ୯—୧୯ |
| ତୃତୀୟ ଅଧ୍ୟାୟ—ଭାବୀ ପ୍ରଳୟର ରୂପରେଖା | ୧୯—୨୭ |
| ଚତୁର୍ଥ ଅଧ୍ୟାୟ—ଉତ୍ପାଦନ, ବଣ୍ଟନ ଓ ଶାସନର ପ୍ରାଚୀନ କଳ୍ପନା | ୨୭—୩୭ |
| ପଞ୍ଚମ ଅଧ୍ୟାୟ—ଅସଲ୍ ଓ ନକଲ୍ ଗଣତନ୍ତ୍ର | ୩୭—୪୩ |



# ଅଭିମତ

ମୁଁ ଶ୍ରୀଯୁକ୍ତ ଲକ୍ଷ୍ମଣ ମିଶ୍ରଙ୍କ 'ଧର୍ମରାଜ୍ୟ' ପାଣ୍ଡୁଲିପିର କୟଦଂଶ ତାଙ୍କ ନିଜ ମୁଖରୁ ଶୁଣିଲି । କେତେକ ବର୍ଷ ପୂର୍ବେ ତାଙ୍କର ମନସ୍ତତ୍ତ୍ୱ ସମ୍ବନ୍ଧୀୟ ଲେଖା ସହକାରରେ ପାଠକର ତାଙ୍କ ସହିତ ସାକ୍ଷାତ ପରିଚିତ ହେବାପାଇଁ ସାଲେପୁର ଯାଇଥିଲି । ସେତେବେଳେ ୧୯୪୧ରେ ସେ ସାଲେପୁର ହାଇସ୍କୁଲରେ ଶିକ୍ଷକତା କରୁଥିଲେ । ମୁଁ ସେତେବେଳେ ତାଙ୍କର ବିଶ୍ଳେଷଣକାରୀ ମନ ଭିତରେ ବିଦ୍ରୋହର ଗୋଟିଏ ଅଗ୍ନିପଥ ଦେଖି ପାରିଥିଲି । ଏହି ଲେଖା ତାଙ୍କର ଏହି କେତେ ବର୍ଷର ଅଭିଜ୍ଞତାର ଫଳ ।

**ଲକ୍ଷ୍ମୀନାରାୟଣ ସାହୁ**
ଭାରତ ସେବକ ସମିତି ସଭ୍ୟ, କଟକ
୧୯।୫।୫୦

---

ମୁଁ 'ଧର୍ମରାଜ୍ୟ' ଓ 'ରାମରାଜ୍ୟ'ର କୟଦଂଶ ପଠନର ସୌଭାଗ୍ୟ ପାଇଛି । ବିରାଟ ଉପାଦାନ ହସ୍ତରେ ଗ୍ରନ୍ଥକର୍ତ୍ତାଙ୍କ ଲୋକସେବା-ତତ୍ପର ରୂପ ପ୍ରତୀତ ହେଲା ।

**ପଣ୍ଡିତ ଶ୍ରୀ ଗୌରୀଶଙ୍କର ପାଣିଗ୍ରାହୀ**
ବରଗଡ଼, ୫ । ୪ । ୫୦

---

'ଧର୍ମରାଜ୍ୟ' ଜନସାଧାରଣଙ୍କର ପଥପ୍ରଦର୍ଶକ ହୋଇପାରିଲେ ଗାନ୍ଧି-ପରିକଳ୍ପିତ 'ରାମରାଜ୍ୟ' ଅନୁପଲଭ୍ୟ ହେବ ନାହିଁ ।

**ଶ୍ରୀ ବାଳକୃଷ୍ଣ ପଟ୍ଟନାୟକ**
ଜରପଡ଼ା ହାଇସ୍କୁଲ, ଅନୁଗୁଳ

---

# ଭୂମିକା

କାଳୀ ଶିବମୂର୍ତ୍ତିର ପରିକଳ୍ପନାରେ ସ୍ୱାର୍ଥପର ଭାଇସ୍ତୁର-ଶାସନକୁ ( Brother Pattern Government ) ଲୋପ କରି ପିତୃପ୍ରକୃତିମୂଳକ ଶାସନ ପ୍ରତିଷ୍ଠା କରିବାର ଏକ ଚିନ୍ତାଧାରା ରହିଛି । ମଣିଷର ମନରେ ତାର ପିତାମାତାର ପ୍ରଚ୍ଛନ୍ନ ଶକ୍ତି ରହିଥାଏ । ସୁବିଧା ସୁଯୋଗ ପାଇଲାକ୍ଷଣି ଏହା ଜାଗ୍ରତ ହୁଏ । କାଳୀମୂର୍ତ୍ତିକୁ ମାନବର ଶୈଶବ କାଳରେ ତାର ମା'ର ପ୍ରଚଣ୍ଡ କ୍ରୋଧର ଏକ ରଣଚଣ୍ଡୀ ଓ ମୂର୍ତ୍ତିମାନ ବିଗ୍ରହ ରୂପରେ ପରିକଳ୍ପନା କରାଯାଇଛି । ନିଷ୍ପେଷିତ ଜନତାର ମନରେ ଏହି ପ୍ରଳୟଙ୍କରୀ ମାତୃଶକ୍ତି ବାରମ୍ବାର ଜାଗ୍ରତ ହୋଇ ସମାଜର ସର୍ବବିଧ ବାଧାବିଘ୍ନକୁ ଧ୍ୱଂସ କରେ । ବ୍ରହ୍ମା, ବିଷ୍ଣୁ ଓ ଶିବର ପରିକଳ୍ପନାରେ ଭାରତର ଅତୀତ ଯୁଗର ଏହି ଚିନ୍ତାଧାରା ରହିଅଛି ଯେ ବୈଶ୍ୟ-ମନୋବୃତ୍ତିବିଶିଷ୍ଟ ଧନୀର ଧନ ବଳରେ ଦରିଦ୍ର-ଶୋଷଣକୁ ଲୋପ କରିବା ପାଇଁ କ୍ଷତ୍ରିୟ-ମନୋବୃତ୍ତିବିଶିଷ୍ଟ ଏକ ଡିକ୍‌ଟେଟର ଏବଂ ଏହି ଡିକ୍‌ଟେଟରଙ୍କ ସ୍ୱେଚ୍ଛାଚାରକୁ ନିୟନ୍ତ୍ରିତ କରିବାପାଇଁ ଏକ ସର୍ବତ୍ୟାଗୀ ବୈରାଗୀର ( Non-violent anarchist ) ଆବଶ୍ୟକତା ପଡ଼େ । ବ୍ରହ୍ମାର ପରିକଳ୍ପନା ପଥରେ ସମାଜର ଅନ୍ନସୃଷ୍ଟି, ବିଷ୍ଣୁର ପରିକଳ୍ପନାରେ ଏହି ଅନ୍ନର ନିୟନ୍ତ୍ରଣ ଓ ଶିବର ପରିକଳ୍ପନାରେ ଅହିଂସା-ବୈରାଗ୍ୟର [ a studied, determined and conscious contempt to the possession of wealth, power and glory ] ଚିନ୍ତାଧାରାହିଁ ରହିଅଛି ।

ବିନୀତ
ଲେଖକ

# ଧର୍ମରାଜ୍ୟ

## ପ୍ରଥମ ଅଧ୍ୟାୟ

### ଚଣ୍ଡୀଯୁଗର ପୁନର୍ବୃତ୍ତ

୧ । ପ୍ରଶ୍ନ—ବ୍ରହ୍ମା, ବିଷ୍ଣୁ ଓ ଶିବ କି ବେଶରେ ଆସି ସଭା କଲେ ?

ଏଥନେ ମେ ପ୍ରଭୁ ଶୂଳପାଣି ଜଗନ୍ମାତାଙ୍କୁ ସଙ୍ଗେ ଘେନି
ଜାହ୍ନବୀ କୂଳ ଶମଶାନେ ଦଶାଶ୍ୱମେଧ ଘାଟ ସ୍ଥାନେ,
ଚଣ୍ଡାଳ ଚଣ୍ଡାଳୁଣୀ ବେଶେ ବସିଣ ଥିଲେ ବୃକ୍ଷ ପାଶେ ।
ବ୍ରହ୍ମାଁ ତା ଧ୍ୟାନେ ଜାଣନ୍ତେ ସାବିତ୍ରୀ ଦେବୀଙ୍କ ସଙ୍ଗତେ,
ମାୟାରେ ଶ୍ରମଜୀବୀ ବେଶ ଧରି ମିଳିଲେ ଶମ୍ଭୁ ପାଶ ।
ବିଷ୍ଣୁ ବୈକୁଣ୍ଠପୁର ଛାଡ଼ି ଅନ୍ନପୂର୍ଣ୍ଣାଙ୍କୁ ସଙ୍ଗେ ଧରି
ପଙ୍ଗୁ ଭିକାରି ବେଶ ହୋଇ ମିଳିଲେ ସେ ଠାବରେ ଯାଇ ।

ବ୍ରହ୍ମା ଯେ ବିଷ୍ଣୁ ମହେଶ୍ୱର
ତନହେଁ ତନ ରୂପ ଧରି
ଏ ଘୋର କଳିକାଳ ନାଶି
କଳଙ୍କି ବେଶେ ଚକ୍ରପାଣି

* ମୂଳିଆ ଅନାଥ ଚଣ୍ଡାଳ,
ବସି ଅଛନ୍ତି ସଭା କରି ।
ଶେଷ ହେବାକୁ ହେଲା ଆସି,
ଦୁଷ୍ଟଙ୍କୁ ପକାଇବେ ହାଣି ।



ବ୍ରହ୍ମା ଯେ ବିଷ୍ଣୁ ମହେଶ୍ୱର·········...
················ବସି ଅଛନ୍ତି ସଭା କରି ।

—ପୃ ୨

*ବିଷ୍ଣୁ କରକାଣ୍ଡ ପଣ୍ଡ୍ୟ ବେଶରେ ଓ ଶିବ ଚଣ୍ଡାଳ ବେଶରେ ଧନୀ, ଦାନୀ, ବୀର ଓ ବ୍ରାହ୍ମଣମାନଙ୍କୁ ପରୀକ୍ଷା କରିବା ପୁରାଣ ପ୍ରସିଦ୍ଧ ।

ବୋମା ବନ୍ଧୁକ ଯୁଗ ଏ ତ ହେବ ଯା ସମ୍ଭବ କେମନ୍ତ ?
କେମନ୍ତେ ହରି ଖଣ୍ଡା ଧରି ଚଳା ଘୋଡ଼ାରେ ବିଜେକରି
ଅସୁର ଥାଟ ସଂହାରିବେ ପୃଥିବୀଭାର ଉଣ୍ଣାସିବେ ।
ଅସୁରମାନେ ଥିବେ ଧରି ବୋମାବନ୍ଧୁକ ନଳ ଗୁଳି ।
ତାହାଙ୍କୁ କପରି ବା ହରି ଖଡ଼୍‌ଗାଘାତେ ଦେବେ ଦଳି ?
ଏ ତ ଲାଗଇ ଅଚମ୍ବିତ ଶଙ୍କର ବିସ୍ମୟେ ଏମନ୍ତ,
ବଢ଼ିବାପାଇଁ ବିଷ୍ଣୁମନ ପୁଛିଲେ ଅହେ ବିଷ୍ଣୁ ଶୁଣ ।

ଶଙ୍କର ଉବାଚ

ଅହେ ବୈକୁଣ୍ଠବାସୀ ହରି କେମନ୍ତେ କଳ୍କୀରୂପ ଧରି,
ଖଣ୍ଡାରେ ସଂହାରି ଦୁଷ୍ଟଙ୍କୁ ଉଣ୍ଣାସ କରିବ ମହୀକୁ ?
ଅସୁରଙ୍କର ନଳ ଗୁଳି ଉଡ଼ାଜାହାଜ ଧାଡ଼ ଧାଡ଼ି,
ବୋମା କମାଣ ବିଷବାଷ୍ପ ଏମାନଙ୍କୁ କି ସମକକ୍ଷ,
ହୋଇବ ତୁମ ତରୁଆଳ ଫିଟାଇ କୁହ ଆଦିମୂଳ ।
ହେଣୁ ଏ ଘୋର କଳିକାଳ ମଣିଷ ହୋଇଛୁ ଅସୁର,
ତେଣୁ ତୁହଇଁ କା'ର ପ୍ରତେ ଦୁଷ୍ଟଙ୍କୁ ନାଶିବ ଯେମନ୍ତେ ।

୨ । ପ୍ରଶ୍ନ—ଉଗ୍ରତମ ହିଂସାକୁ ଅହିଂସା ଦ୍ୱାରା ପ୍ରଶମିତ କରିପିବାର,ପ୍ରମାଣ କଣ ଅଛି ?

ବିଷ୍ଣୁ ଉବାଚ

ଶୁଣି ପାର୍ବତୀନାଥ ବାଣୀ ଅଳପ ହସି ଚକ୍ରପାଣି ।
ବୋଲନ୍ତି ଶୁଣ ତ୍ରିପୁରାରି ପୁରୁବ କଥା ହେତୁକରି ।
ହିଂସା ହୋଇଲେ ଉଗ୍ରତର ସେ ହିଂସା ନୁହେଁ ଅସୁରର ।

*ସେ ହିଂସା ସ୍ୱୟଂ ଆଦ୍ୟାଶକ୍ତି   ତୁମର ଅର୍ଦ୍ଧାଙ୍ଗୀ ଅଟନ୍ତି ।
ତାଙ୍କୁ ଜିଣିବ ହିଂସାବଳେ   କେହୁ ନାହାନ୍ତି ଏ ତ୍ରୟଲୋକେ
ଉଗ୍ରଚଣ୍ଡିକା ବେଶ ହୋଇ   ଜଗଜ୍ଜନନୀ ହେଲେ ବାର୍ଣ୍ଣି,
ରଖନ୍ତା କେହୁ ତ୍ରିଭୁବନେ   ନାହାଁନ୍ତି ଶମ୍ଭୁ ଜାଣ ତୁମେ ।
ଦେବୀଙ୍କ କୋପ ହେବ ଯେବେ   ପ୍ରଳୟ ଜାଣ ହେଲା ତେବେ ।
ବ୍ରହ୍ମା କେଶବ ଶିବ ଆଦ   ନ ପାରିବେ କେ ତାଙ୍କୁ ରୋଧି ।
ସୁଦର୍ଶନ ଯେ ଚକ୍ର ମୋର   ତୁମ ଏ ହିଂସାର ତ୍ରିଶୂଳ,
ଅଚଳ ହୋଇବ ସରବ   ମାଆଙ୍କୁ କେ ରୋଧି ପାରିବ ।
ଯେବେ ଏ ହିଂସା ତ୍ରିଶୂଳକୁ   ଶିବ ହେ ଫିଙ୍ଗିବ ଦୂରକୁ,
ମାଆର ଉଗ୍ର ଚଣ୍ଡୀ-ମୂର୍ତ୍ତି —   ଅଗରେ ଲେଉଟିବ ଝଟିତ,
ବୋଲିବ ସାହସ ସହିତ   ଶୁଣ ତ୍ରିପୁର ଅଦମାତ;
"ନାଶିବୁ ଯେବେ ବିଶ୍ୱ ତୁହି   ଛାତି ମୋ ଦେଉଚ୍ଛି ପତାଇ,
ମୋର ଛାତିରେ ଚଢି ଯାଇ   ରକତ ପିଇ ଯାଅ ତୁହି,
ମୋର ଜୀବନ ସଂହାରଣ   ରକ୍ଷାକର ଏ ତ୍ରିଭୁବନ ।"
କହୁ ଏପରି ଲେଉଟିଯିବ   ବୁକୁ ମେଲାଇ ପଡ଼ିଯିବ ।
ହିଂସାକୁ ଅହିଂସା ବଳରେ   ରୋକି ପାରିବ ଶିବ ହେଲେ,
ହେ ଶିବ ତୁମ ଯୋଗବଳ   ଏମନ୍ତେ ହୋଇବ ସଫଳ ।
ଏପରି ସତ୍ୟଯୁଗେ ଥରେ   ମହିଷାସୁର ବଧ ପରେ,
ମାଆ ଯେ ହୋଇଥିଲା ବାଇ   ଭୁବନ ବିନାଶିବା ପାଇଁ ।
ଖଣ୍ଡା ଖପର ହାତେ ଧରି   ବିବସନ ଯେ ହୋଇ କରି,

* ସମାଜର ଅଧିକାଂଶ ଲୋକ ଜୀବନର ଲକ୍ଷ୍ୟ ହୁଡ଼ି ପରସ୍ପରର ସେବା ଓ ସହଯୋଗ ଛାଡ଼ି ସ୍ୱାର୍ଥପର ହେଲେ ସମାଜରେ ଉଗ୍ରତମ ତାମସିକ ହିଂସାର ଉଦୟ ହୁଏ । ଉଗ୍ରତମ ତାମସିକ ହିଂସାକୁ ମହାକାଳୀ କୁହାଯାଏ ।

ସୁର ଅସୁର ସମସ୍ତଙ୍କୁ ମାରି କଲିଜା ଖାଇବାକୁ
ମାଡ଼ି ଅସିଲା ଯେବେ ମାଆ କାହାକୁ ନ ଦଶିଲା ରାହା ।
ମାଆର କ୍ରୋଧ ଶାନ୍ତ ପାଇଁ ସମକ୍ଷ କେହି ହେଲେ ନାହିଁ ।
ମୁହିଁ ନୋହିଲି ସମରଥା ଖଟିଲା ନାହିଁ ମୋର ମଥା ।
ହେ ଯୋଗୀଶ୍ୱର ତୁମେ ପରା ତ୍ରିଶୂଳ ଫିଙ୍ଗି ଦେଇ ତ୍ୱରା,
ମାଆ ଅସିବା ପଥେ ଯାଇ ତୁକୁ ପତାଇ ଗଲ ଶୋଇ,
(୧) ଯୋଗୀର ଆତ୍ମବଳ ଦେଖି ହିଂସା ମୂରତି ଗଲା ରୋକି ।
ରକ୍ଷା ହୋଇଲା ତ୍ରିଭୁବନ ମୁହିଁ ପାଳିଲି ତହିଁ ଜନ ।
ବ୍ରହ୍ମା ସୃଷ୍ଟିରେ ଦେଲେ ମନ ତୁମେ ବସିଲ ଯୋଗାସନ ।

୩ । ପ୍ରଶ୍ନ—ମହିଷାସୁର ବେଳର କଥା ଏ ଯୁଗରେ କପରି ଘଟୁଛି ?

ପୁଣି ବୋଲନ୍ତି ଚକ୍ରପାଣି ହିଂସା ଯେ ପ୍ରବଳ ହେଲାଣି ।
ମହିଷାସୁର ବେଳ କଥା ଏବେ ଘଟିଲା ପଞ୍ଚମଥା ।
ହିଂସାରୂପିଣୀ ମହାମାୟୀ ତାହାକୁ ବଶ୍ୟ ହେବା ପାଇଁ,
ମହିଷାସୁର ଦୈତ୍ୟରାଜ ସେ ଥିଲା ବ୍ରହ୍ମଚର୍ଯ୍ୟ ଆଗ,
ମାଆଙ୍କ ଯୋବନକୁ ଚାହିଁଲା ତାଲେ ଅସୁର ନାଶ ଗଲା ।
ତାହାର ହୋଇଲା ପତନ ସେ ଗଲା ଶମନ ସଦନ ।
ଦେଶ ଦେଶର ରାଜା ଆଜ (୨) ମହିଷାସୁର ବେଶ ସାଜ,

୧ । ଉଗ୍ରତମ ହିଂସାକୁ ଶିବସୁଲଭ ଅହିଂସା ଦ୍ୱାରା କେବଳ ପ୍ରଶମିତ କରାଯାଇ ପାରେ ।

୨ । ଚଣ୍ଡୀ ପୁରାଣରୁ ମିଳେ ଯେ ସତ୍ୟଯୁଗର ପ୍ରାରମ୍ଭରେ ଅସୁରମାନଙ୍କ ଅତ୍ୟାଚାରହେତୁ ପ୍ରାକୃତିକ ନିୟମ ଅନୁଯାୟୀ ଅସତ୍ୟ ଓ ହିଂସାର ଚରମ ପରିଣତି ଘଟିଥିଲା ।

ହିଂସାକୁ ବରବା ଇଚ୍ଛନ୍ତି ବୋମା ବନ୍ଧୁକ ଧରନ୍ତି ।
ହିଂସାର ଷୋଡ଼ଶୀ ମୂରତି ହରଇ ରଜାଙ୍କର ମତି ।
ଢାଲିଅ ପୁଣି ବିସାଦିଅ ଲୋଭି ଦେପାରି ଲଗିଥିଅ,
ମିଛୁଅ ଟକ ଦୁଅଲୋଭ ନାଲି ଅଖିଅ ଠାଉଟର,



ଯୋଗୀର ଅସ୍ତବଳ ଦେଖି ହିଂସା ମୂରତ ଗଲ ଲେଭ ।

—ପୁ ଛ

ଚଣ୍ଡମୁଣ୍ଡଙ୍କ ବଂଶ ଏହୁ, ଧୂର୍ଜଟୀ, ତୋତେ କହୁଲଇଁ ।
ଦେବୀଙ୍କ ଖଣ୍ଡା ଖପରରେ ନାଶ ହୋଇବେ ଏ ସକଳେ ।
ରକତ ବୀର୍ଯ୍ୟ ବଂଶ କଥା ଶୁଣ କହେ ମୁଁ ପଞ୍ଚମଥା ।

ସତକୁ ମିଛ ମିଛେ ସତ କରିବାରେ ଯେ ସିଦ୍ଧହସ୍ତ,
ଧନୀଙ୍କଠାରୁ ଟଙ୍କା ଖାଇ ଗରିବେ ଶୂଳି ଯେ ଦିଅଇ,
ଯାହାଙ୍କ ଠାରୁ ବଳ ପାଇ ଗାଁଇକେ ବିବାଦ ବଢ଼ଇ,
ଭାଇ ଭାଇରେ ହଣାହଣି ଯାହାଙ୍କ ଯୋଗୁଁ ହୁଏ ପୁଣି,
ଲୋକଙ୍କୁ ପାପରେ ମତାଇ ପଇସା ଯେ ନିଏ କମାଇ,
କୁହେ ଯେ ଲୋକଙ୍କୁ ଚେତାଇ ପାପ କରିଲେ ଦୋଷ ନାହିଁ
କୁହେ ଯେ କିଛି ଚିନ୍ତା ନାହିଁ ବେଶ୍ୟାବାଡ଼ିକି ଯାଅ ତୁହି,
କୁଷ୍ଠ ପ୍ରମେହ ଯେବେ ହେବ ଇଞ୍ଜିସନ ମୋ କାମ ଦେବ,
ସେମାନେ ଅଟନ୍ତି ହେ ହରି ରକ୍ତବୀର୍ଯ୍ୟଙ୍କ ବଂଶଧର ।
ମାଲ୍‌ମାମଲା ମକଦ୍ଦମା କାଳ କ୍ଷେପଣେ କଟକଣା,
ଦଫାକୁ ଦଫା ଯେ ତଲବ ତାରିଖ ଗଡ଼ାଇବା ଭାବ,
ଶମନଜାରି ଯେ ନିଲାମ ଯାହାର ବ୍ରହ୍ମାସ୍ତ୍ର ଏମାନ,
ଗରିବ ପ୍ରଜା ଭିଟାମାଟି ଯାନ ଆସନ ସବୁ ଲୁଟି,
ଗରିବ ଲୋକଙ୍କୁ ଉଚ୍ଛନ୍ନ କରାଇବାରେ ଯେ ନିପୁଣ,
ସେମାନେ ଅଟନ୍ତିଟି ଜାଣ ରକତ ବୀର୍ଯ୍ୟର ସନ୍ତାନ ।
ବିବାଦେ ରଖିଲେ ମତାଇ ରକତ ଚୋଷିଆ ହୁଅଇ,
ଲୋକେ ହୁଅନ୍ତି ସଜାଗର ଯୁଦ୍ଧଭୂଇଁକି ଆଗୁସାର,
ଏ ଥିଲା ରକ୍ତବୀର୍ଯ୍ୟ ନୀତି ଆଜି ପୁଣି ତା ଘଟୁଅଛି ।
ମାଲ୍‌ମାମଲା ମକଦ୍ଦମା କରି ହୋଇଲେ ନାନାଖାନା,
ଲୋକେ*ହିଂସାକୁ ଆଦରିବେ ଯୁଦ୍ଧଭୂଇଁକି ଧାଡ଼ି ଦେବେ,
ଏ ଥିଲା ରକ୍ତବୀର୍ଯ୍ୟ ନୀତି ଆଜି ପୁଣି ତା ଉଠେ ମାତି ।

* ହିଂସା ଉଗ୍ରତମ ଓ ନଗ୍ନ ହେଲେ ତାହାର ଉପଶମ କେବଳ ଅହିଂସାଦ୍ୱାରା ଘଟେ ବୋଲି ଚଣ୍ଡୀରୁ ପ୍ରମାଣ ମିଳେ ।

ଲୋକଙ୍କୁ ମକଦ୍ଦମା ଘୋର ଲାଗିଅଛି ଫିସାଦଅଛି ଘୋର,
ଦଲବ ଷ୍ଟାମ୍ପର ପାଇ କରଇ ରକ୍ତବୀର୍ଯ୍ୟ ଅଇ ।
ଅତୁର ଏକ କଥା ମୋର ଶୁଣ ହେ ପାର୍ବତୀର ବର,
ମାଲମାମଲା ମକଦ୍ଦମା— ଇତ୍ୟାଦି ଯେତେ କଷ୍ଟକଣା,
ଏ ସ୍ତାବେ ପ୍ରଜାର ସର୍ବସ୍ୱ ନେଇ ପଶଇ ରାଜକୋଷ ।
ରଜାର ବଡ଼ କାରଗର ମୟୂଦାନବ ପଦ ଧାର,
ସେ ରାଜକୋଷୁ ଧନ ଯେତେ ଖରଚ କରି ଅପ୍ରମିତେ,
ତିଆରି କରେ ହତିଆର ଗୋଲା ବନ୍ଧୁକ ତରୁଆଳ ।
ବୋମା ବନ୍ଧୁକ ନଳଗୁଲି ବିଷାଣ ବାମ୍ଫ ଯେ ହାବେଲି ।
ଏସବୁ ପ୍ରଜାଙ୍କ ହାତରେ ଧରାଇ ରଜାଏ ଚତୁରେ,
ଯୁଦ୍ଧବେଦୀକି ପଠାଇବେ *ମାଆଙ୍କୁ ବଳି ଯୋଗାଇବେ ।
ଅପୂର୍ବ ଏହି ଗ୍ରନ୍ଥସାର କଳି କଲୁଷ ରୋଗହର ।
ଶ୍ରଦ୍ଧାରେ ଏହା ଯେ ପଢ଼ିବ ତା ହୃଦେ ସତ୍ୟ ବିକାଶିବ ।
ଶ୍ରୀଗୁରୁ ଆଜ୍ଞା ଶିରେ ଘେନି ଗୀତେ ଏ ଅଧମ ବଖାଣି ।
ଚଣ୍ଡାଳ ଠାରୁ ହୀନ ମୁହିଁ ସୁଜନେ ଦୋଷ ଧରି ନାହିଁ ।

ଇତି ଶ୍ରୀ ଧର୍ମରାଜେ୍ୟ ପ୍ରଥମ ଖଣ୍ଡେ ଶିବବିଷ୍ଣୁ କଥୋପକଥନେ ଚଣ୍ଡୀପୁରର ପୁନର୍ବୃତ୍ତି ବର୍ଣ୍ଣନ ନାମ ପ୍ରଥମ ଅଧ୍ୟାୟ ।

—୦—

* କାମିନୀ କାଞ୍ଚନରେ ଅସକ୍ତିରୁ ହିଂସାର ଉଦ୍ଭବ ଘଟେ । ଏହି ଅସକ୍ତିକି ଏକ ମାୟାମୟୀ ଷୋଡ଼ଶୀ ମୋହିନୀ ରୂପେ ଚଣ୍ଡୀରେ କଳ୍ପନା କରାଯାଇଛି ।

# ଦ୍ୱିତୀୟ ଅଧ୍ୟାୟ

## ସତ୍ୟକାମୀ ଦଳ ଓ ବିପକ୍ଷଦଳମାନଙ୍କର ସ୍ୱରୂପ ବର୍ଣ୍ଣନା

୪ । ପ୍ରଶ୍ନ—ମହିଷାସୁରର ମନ୍ତ୍ରୀ ଶୁମ୍ଭଦୈତ୍ୟ କପଟ ଧର୍ମଧ୍ୱଜୀ ଥିଲା ଓ ତାହାର ସାନଭାଇ ନିଶୁମ୍ଭ କପଟ ଧର୍ମଛଡ଼ା ଥିଲା ?

ପାର୍ବତୀ ଉବାଚ

ରକ୍ତବୀର୍ଯ୍ୟ କଥା ଅନ୍ତେ    କେଶବ ମଉନ ରହନ୍ତେ,
ପାର୍ବତୀ ବୋଲନ୍ତି ହେ ହର,    କଥାଏ ପୁଚ୍ଛିବି ବିସ୍ତର ।
ସତ୍ୟ ଯୁଗରେ ଯେତେବେଳେ    ମହିଷ ବଧିବା ଇଚ୍ଛାରେ,
ଷୋଡ଼ଶୀ ରୂପକୁ ଧରିଲି    ପଥେ ମୁଁ ବସି ରହିଥିଲି,
ଶୁମ୍ଭ ନିଶୁମ୍ଭ ଦୁଇଭାଇ    ଆସିଲେ ମୋତେ ନେବାପାଇଁ ।
ମୁହିଁ କହିଲି ବୀର ଯେହୁ    ଭୋଗ କରିବ ମୋତେ ସେହୁ ।
ଶୁମ୍ଭ ଯେ ଥିଲା ବଡ଼ଭାଇ    * ଧରମଧ୍ୱଜୀ ପାପୀ ସେହି,
ମୁଖେ କହଇ ହର ହର    ଭିତରେ କାଳକୂଟ ଭର,
କୂଟ ନୀତିରେ ବିଶାରଦ    ଥିଲାକ ସେ ଶୁମ୍ଭ ଦାନବ ।
ସାନ ଭାଇକି ସେ କହିଲା    ସୁନ୍ଦର ତରୁଣୀ ପାଇଁ ଭଲା,
କ୍ଷମାଇ ଗୋଳ ଇଚ୍ଛା ଭାଇ    ହିଂସା କରିଲେ ଲାଭ ନାହିଁ ।
ସତ୍ୟ ଅହିଂସା ସାରଧର୍ମ    ଧର୍ମର ମୂଳେ ସବୁ କର୍ମ ।
ଦେଖ ଏ ବାଳା ଅନାଶ୍ରିତ    ପୁଣି ଯୌବନେ ଉପନୀତ ।

---

* ପ୍ରତାରକ ଧର୍ମଧ୍ୱଜୀମାନେ ନାସ୍ତିକ ଓ ଧର୍ମଛଡ଼ାଙ୍କଠାରୁ ଅଧିକତର ଭୟଙ୍କର ।

ଅଶ୍ରୁପ୍ତ ତାକୁ ମୁହିଁ ଦେବି    ମୋ ଘରେ ନେଇଣ ରଖିବି ।
ତୁ ଅଛୁ କାମ ଜର ଜର    ହିଂସାରେ ହେଲୁଣି ପାଗଳ ।
ଏହୁ ବାଳାକୁ ମାରିଧର    ରଖିବୁ ଘରେ ଦାସୀ କରି ।
ସ୍ତ୍ରୀ ଜାତି ଉପରେ ବିପଦ    ମୋପରି ଲୋକ କି ସହିବ !



ମୁଖେ କହଇ ହରି ହରି    ଭିତରେ କାଳକୂଟ ଭରି ।

—ପୃ ୯

ତୋର ଏ ହିଂସା ଭାବ ଦେଖି    ପ୍ରସ୍ତୁତ ମୁହିଁ ରହିଅଛି ।
ସତ୍ୟ ଅହିଂସା ରକ୍ଷାପାଇଁ    ଆଜ ମୁଁ ତୋତେ ବଧିବଇଁ ।

ମୋର ଏ ତାଣ୍ଡବ ନାଟକରେ  ତୋପରେ ହିଂସ୍ରକ ନ ମଲେ,
ସତ୍ୟ ଅହିଂସା ଧର୍ମଭାବ  ସମାଜେ ହେବ ନ ସଂଭବ ।
ଏତକ କହି ଶୁମ୍ଭ ଦୈତ୍ୟ  ଭୂନ୍ନ ହୋଇଲା ହେ ଅଚ୍ୟୁତ ।
ନିଶୁମ୍ଭ ତାର ସାନଭାଇ  ଧରମଛଡ଼ା ପାପୀ ସେହି ।
ତହୁଁ ସେ କହିଲା ଯା ଶୁଣ  ତାହା ମୁଁ କହୁଅଛୁ ପୁଣ ।
ନିଶୁମ୍ଭ କହେ ଶୁଣ ଭାଇ,  ଧରମ ବୋଲି କିଛି ନାହିଁ,
ଭୋଗର ମୂଳେ ଏ ଜଗତ  *ଭୋଗୁଁ ହୁଅଇ ଆତଜାତ;
ବୀରଭୋଗ୍ୟ ଏ ବସୁନ୍ଧରା  ବୀରଙ୍କ ପାଇଁ ଧନଦାରା ।
ଆହାର ନିଦ୍ରା ମଇଥୁନ,  ଏ ଅଟେ ଜୀବର ଧରମ ।
ଆହାର ବିନେ ଯେସନେ ନର  ରଖି ନ ପାରେ କଳେବର,
ବିହାର ତେସନ ପ୍ରକାର  ଭୋଗ୍ୟବସ୍ତୁରେ ଏହା ସାର;
ଏଥିରେ ପାପପୁଣ୍ୟ ନାହିଁ  ଯେସ୍ଥାନେ ଯେମନ୍ତ ମିଳଇ ।
ଭୋଗ ବିଳାସ ଅବସର  ପ୍ରତି ଲୋକର ଅଧିକାର,
ଏହା ଯେ ଜନ୍ମଗତ ବାଦ  ଖଣ୍ଡି ପାରିବ କେଉଁ ବିଧି ?
ଧରମ ବୋଲି କରୁ ପାଟି  ସେ ଅଟେ ଏକ ନିଶାଝୁଙ୍କି,
ନିଶା ଘାରିଲେ ନର ଯେସନେ  କଳ୍ପନା-ରାଇଜରେ ଭ୍ରମେ,
ସତ୍ୟ ଅହିଂସା ସେବା ତପ  ତ୍ୟାଗ ଧରମ ଦୟାବ୍ରତ,
ଅଟଇ ତେସନ ପ୍ରକାର  ଛଳନା ଧପ୍ପାବାଜି ସାର ।
ଯେସନେ ନିଶାପାଣି ଖୋଇ  ପ୍ରଜାଙ୍କୁ ରଖିଣ ଭୁଲାଇ,
ରଜାଏ ପ୍ରଜାଧନ ଲୁଟି  ନିଅନ୍ତି ଚିପି ପ୍ରଜାତଣ୍ଟି,
ତେସନେ ଧର୍ମଧ୍ୱଜା ତଳେ  ଶାନ୍ତ ରଖିଣ ପ୍ରଜାକୁଳେ
ରଜାଏ କାମିନୀ-କାଞ୍ଚନେ  ମତ୍ତ ଥାଆନ୍ତି ରାଜଧନେ ।

* ସମାଜରେ ଧର୍ମଧ୍ୱଜୀଙ୍କର ପ୍ରଭାବ ଯେତିକି ବଢ଼େ ଧର୍ମଛଡ଼ା-ମାନଙ୍କ ସଂଖ୍ୟା ସେତିକି ବୃଦ୍ଧି ହୁଏ ।

ଅହିଂସା ଗୁଣ ଗାଇଗାଇ    ଧର୍ମକୁ ଅଖି ଠାରୁ ତୁହି,
ଅହିଂସା ବୋଲି ନାହିଁ କହୁ    ହିଂସାରେ ଏ ବିଶ୍ୱ ଚଳୁଛି;
ହିଂସାହିଁ ଜୀବର ପ୍ରକୃତ    ଅହିଂସା ଅଟଇ ବିକୃତ ।
ଯେସନେ ମାଟି ଅଟେ ସାର    ଘଟୀ ଅଟଇ ତା ବିକାର,
ଅହିଂସା ତେସନ ଅଟଇ    ଭୀରୁଙ୍କ ଠାରେ ଶୋଭାପାଇ ।
ଜୀବ ଜୀବକୁ ହିଂସାକଲେ    ଆହାର କରେ ଏ ଶସୁଳେ,
*ହିଂସା ତେଜିଲେ ସର୍ବଜୀବେ    ଆହାର ବିନେ ନାଶ ଯିବେ ।
କେଉଁ ପୁରୁଷ ହିଂସା ଛାଡ଼ି    ପାଇଛି ମନମାଫି ନାରୀ ?
ସତ୍ୟ ଅହିଂସା ବନ୍ଦି ଅଛୁ,    ତୁ ହିଂସା କାହିଁକି କରୁଛୁ ?
ସତ୍ୟ ଅହିଂସା ରକ୍ଷାପାଇଁ    ମୋତେ ନାଶିବୁ ଚହୂ ତୁହି .
ହିଂସାକୁ ହିଂସାକଲେ ରୋକ    କେହି ଅହିଂସା ସ୍ଥାପିଛି କି ?
ତୁ ଅବା ବଡ଼ାଇ କରିବୁ    ଛଳନା କରଣି ଭାଷିବୁ,
"ଶାସନ ଚଳାଇବା ପାଇଁ    ହିଂସା ଆୟୁଧ ଥିବା ଗୃହିଁ ;
ଶାସକ ନିଜ ଅକ୍ତିଆରେ    ଗୋଳା ବନ୍ଧୁକ ନ ରଖିଲେ
ରାଜଦ୍ରୋହୀଏ କରି ଗୋଳ    ରାଜ୍ୟ କରିବେ ଛାରଖାର ।"
ତୁହି ଏ କ୍ଷମତା ଆସନେ    ବସିବା ପାଇଁ ସବୁଦିନେ,
ସିଆଣି ପଣେ ଯୁକ୍ତି କରି    ବୋମା ବନ୍ଧୁକ ରଖୁ ଧରି ।
ମହିଷାସୁର ରାଜ୍ୟେ ତୁହି    ପ୍ରଧାନ ମନ୍ତ୍ରୀ ଅଛୁ ହୋଇ ।
ଅସତ୍ୟ ହିଂସା କାରବାର    କୂଟନୀତିର ଜୁଆଖେଳ,
ଏଥେଁ ସର୍ବଦା ମାତିରହି    ଭଡ଼ଙ୍ଗ ଅନ୍ତ ଦେଖା ନାହିଁ ।
ଏସନେ ସେ ଦୁଇ ଅସୁର    ଶୁମ୍ଭ ନିଶୁମ୍ଭ ମହାବୀର,

*ଅସତ୍ୟ, ହିଂସା ଓ ପାପକାର୍ଯ୍ୟକୁ ସମର୍ଥନ କରିବାପାଇଁ ଲୋକ ଶାସ୍ତ୍ରବଚନ ମଧ୍ୟ ବାଢ଼େ । ଏଣୁ ଶାସ୍ତ୍ର ଉପରେ ନିର୍ଭର ନ କରି ବିବେକ ଉପରେ ନିର୍ଭର କରିବା ଉଚିତ ।

ମୋର ମାୟାରେ ଘାବ ହେଲେ    ପରସ୍ପରକୁ ଧ୍ୱଂସ କଲେ ।
ଏ କଳିଯୁଗେ ଢଏ ଶୁମ୍ଭ    ଜଏ ବା ଅଟଇ ନିଶୁମ୍ଭ;
ଚିହ୍ନାଇ ଦିଅ ହେ ଗୋପାଳ    ମନ୍ତ୍ର ଫଣସ୍ୱ ହେଉ ଦୂର ।
ଜାଣିଲେ ସେମାନଙ୍କୁ ମୁହିଁ    ମୋ ମାୟାବଳେ ଘାରିବଇଁ ।

୫ । ପ୍ରଶ୍ନ—ସରକାରୀ କଳର ଦୋଷ କେଉଁଠି ଅଛି ?

ବସ୍ତି ଉବାଚ

ବସ୍ତି ବୋଇଲେ ଶୁଣ ଉମା    କଳିଯୁଗର ଏ ମହିମା ।
ଶୁମ୍ଭଟି ସରକାରୀ କଳ    ନିଶୁମ୍ଭ ରାଜଦ୍ରୋହୀ ଦଳ ।
*ଅମଲାତନ୍ତ୍ର ସରକାର    ନିସ୍ପନ୍ଦ ପ୍ରାଣହୀନ ଜଡ଼ ;
ଜଟିଳ ସରକାରୀ କଳେ    ପଶିଲେ ପେଷି ହୋନ୍ତି ନରେ ।
ପଣ୍ଡିତ ଗୁଣୀ ଜ୍ଞାନୀଲୋକ    ଏଥେଁ ପଶିଲେ ପାଏ ଛାପ ।
ଆତ୍ମାକୁ ସେ ଜନ ହରାଏ    ଯନ୍ତ୍ରକୁଳର ପରି ହୁଏ ।
ବିବେକ ବୁଦ୍ଧି ହରିଯାଏ    ଫାଇଲି ଘଣ୍ଟା ସାର ହୁଏ ।
ପ୍ରଜାଙ୍କ ହୃଦୟ-ଈଶ୍ୱର    ହୋଇଥାଏ ଯେ ତ୍ୟାଗୀ ନର,
ସେ ମନ୍ତ୍ରୀ ହୋଇ ଏଥେଁ ପଶି    ଆପଣା ଗଳେ ଦିଏ ଫାଶୀ ।
ପ୍ରଜାଙ୍କ ସହିତ ସମ୍ପର୍କ    ତାହାର ହୋଇଯାଏ ଲୋପ ।
ଧରି ଉପରମୁହାଁ ରାସ୍ତା    ଆତ୍ମସେବାରେ କାଳଯାପି,
ଲୋପହୁଏ ତା ବୁଦ୍ଧିବୃତ୍ତି    କବ୍ରିନ ଠାରୁ ଶୁଣେ ନୀତି ।
ନିଜ ଭୋଗକୁ ସାର କରି    ମଟରଗାଡ଼ି ଘୋଡ଼ାଚଢ଼ି,
କ୍ଷମତା ଆସନରେ ବସି    ଭୋଗ ବିଳାସେ ଭୋଳେ ରସି,

* ଅମଲାତନ୍ତ୍ରର ଜଟିଳତା ଲୋପ ନ ହେବାଯାଏ କୌଣସି ସରକାର ସଚୋଟ ହୋଇ ପାରିବ ନାହିଁ ।

ସତ୍ୟ ଅହିଂସା ତ୍ୟାଗକଥା ବହୁତ କରଇ ବକ୍ତୃତା ।
ପ୍ରଜାଙ୍କ ଅଗ୍ରେ ବିନୟରେ ସଫାଇ କରଇ ଚତୁରେ,
ଶୁଣ ହେ ପ୍ରଜାମାନେ ମୋର ସେବା ତ୍ୟାଗକୁ ବ୍ରତ କର୍,
ଢୋକେ ପିଇଣ ଦଣ୍ଡେ ଜୀଅ ଅଧିକ ଶସ୍ୟ ଉପୁଜାଅ ।
ହେ କାରଖାନା ଶ୍ରମଜୀବି । ଧର୍ମଘଟରେ ନ ଯା' ମଜି;
ଧରମଛଡ଼ା କମୁନିଷ୍ଟ ତାଙ୍କ କଥାରେ ନ ଯା ମାତି;
କ୍ଷମତା ପାଇଲେଟି ସେହି ଦେଉଳେ ରଖିବେକ ଗାଈ;
ଦେଅ ଦେବତା ଭଙ୍ଗାଯିବ ମନ୍ଦିର ଘୋଡ଼ାଶାଳ ହେବ;
ସନ୍ତାନ ଯେବେ ଜନ୍ମ ହେବ ତା ବାପ ଚିହ୍ନା ନ ପଡ଼ିବ;
ନିଜର ଧନଦାରି ଘର କେ ଦାବି ନ କରିବ ମୋର;
ସରକାରର ସବୁ ହେବ ନିଜର କିଛି ନ ରହିବ ।
ପ୍ରଜାଏ ଏଣୁ କର ଧ୍ୟାନ କମୁନିଷ୍ଟଙ୍କୁ ସାବଧାନ;
ସତ୍ୟ ଅହିଂସା ବାଣୀ କେବେ ମାନନ୍ତି ନାହିଁ ଏହି ଲବେ;
ହଣା କଟା ଯେ ହିଂସା ନୀତି ଏଥିରେ ଏହାଙ୍କର ତୃପ୍ତି ।

୭ । ପ୍ରଶ୍ନ—ସରକାରଙ୍କ ବିପକ୍ଷ ଦଳମାନେ ନିଶୁମ୍ଭ ଦୈତ୍ୟପରି କିପରି ଧର୍ମଛଡ଼ା ହେଉଛନ୍ତି ?

ଶମ୍ଭୁ ବୋଇଲେ ଶୁଣ ଉମା କଳିଯୁଗର ଏ ମହିମା ।
ଯେତେକ ରାଜଦ୍ରୋହୀ ଗଣ ସରବେ ନିଶୁମ୍ଭ ସମାନ ।
ସରକାରର ସରଘରେ ମାଲିକ ହେବାପାଇଁ ବଳେ ।
ସଭା-ସମିତିମାନ କରି ସରକାରକୁ ଦିଅନ୍ତି ଗାଳି ।

* କେହି କହନ୍ତି ମନ୍ତ୍ରୀ ମୂଢ଼ ନିଜ ଲୋକଙ୍କୁ କଲେ ବଡ଼ ।
ନିଜ କୁଟୁମ୍ବ ବନ୍ଧୁ ଜ୍ଞାତି ଭାଇ ବିରାଦର ନିଜ ଜାତି;
ଏମାନେ ଖାଇଲେ ଚାକିରି ମୋଟା ପାଦୁଅ ବାବୁଗିରି ।
ଆମ ଜାତିରେ ବହୁ ଛଵୀ ନ କରିଲେ କିଆଁ ମନ୍ତ୍ରୀ ?
ଆମେ କ୍ଷତ୍ରିୟ ଯୁଗେ ଯୁଗେ ରାଜୁତି କରୁଥିଲୁ ଆଗେ;
ଅଣକ୍ଷତ୍ରିୟେ କିଆଁ ଆଜି ବସିବେ ମାଡ଼ି ରାଜଗାଦି ?
ଆମକୁ ଯେବେ ଭୋଟଦେବ ରାମ ରାଇଜ ନିଶ୍ଚେ ହେବ ।
ଆନ କେ ମାରି ବାହାସ୍ଫୋଟ ସଭାକୁ କରନ୍ତି ତଟସ୍ଥ;
ବୋଲନ୍ତି ସରକାର ଆଜି ଧନୀ ଦଲାଲ ଅଛି ସାଜି ।
ଧନୀଲୋକର ସ୍ୱାର୍ଥପାଇଁ ଗରିବ ଉପାସେ ମରଇ;
ଜମିଦାର ଯେ ସାହୁକାର ପଇସାବାଲା ପୁଞ୍ଜିଦାର,
କାରଖାନାର ଅଧିକାରୀ ସରବେ ଆଜି ଅତ୍ୟାଚାରୀ ।
ହେ କାରଖାନା ଶ୍ରମଜୀବି, ଉଠ ସରବେ ମାତି ଆଜି;
ଧରମଘଟ ସୁରୁ କର ଅକାମୀ କରିଦିଅ କଳ ।
ଲୋକେ ହୋଇଲେ ହଇରାଣ ନିନ୍ଦା ପାଇବେ ମନ୍ତ୍ରୀଗଣ ।
ଅନ୍ନ ବସନ ଅନାଟନ ହେଲେ କ୍ଷେପିବେ ପ୍ରଜାଗଣ ।
ହେ ରେଲ ମଟର ଶ୍ରମିକ, କର ସରବେ ଧର୍ମଘଟ,
ମନ୍ତ୍ରୀଙ୍କି ତଡ଼ିବାର ପାଇଁ ଅନ୍ୟ ପନ୍ଥା ଯେ କିଛି ନାହିଁ ।
ରେଲ ମଟର ଚଳାଚଳ ଧରମଘଟେ ବନ୍ଦ କର,
ଅଚଳ ସରକାର ହେବ ଅରାଜକତା ବ୍ୟାପିଯିବ ।

* ସରକାରକୁ ସମାଲୋଚନା କରୁଥିବା ରାଜନୈତିକ ଦଳମାନେ ଲୋକଙ୍କ ଠାରୁ ସମର୍ଥନ ପାଇବା ଆଶାରେ ଧର୍ମକୁ ଏକ ଆଖିଠରି ଆତ୍ମପ୍ରବଞ୍ଚନା ବୋଲି ପ୍ରଚାର କରନ୍ତି । ଫଳରେ ନିଜେ ସତ୍ପଥରେ ନ ଚଳି କେବଳ ଦୋଷଦର୍ଶୀ ହୁଅନ୍ତି ।

ହିଂସା ଭରିଜ ହାଣକାଠ ଅଗ୍ନି କାଣ୍ଡର ଉତପାତ,
ଲଗାଇ ଦେଇ ଘୃରଅଡ଼େ ମନ୍ତ୍ରୀଙ୍କ ତଡ଼ିବୁ ସବଳେ ।
ଶାସନ ନିଜ ହାତେ ନେଇ ମୂଳଅରାଜ ଗଢ଼ିଦେବୁ ।
ବ୍ରାହ୍ମଣ କ୍ଷତ୍ରିୟ ବୈଶ୍ୟଙ୍କୁ ସଂହାର କରିବୁଁ ସଭିଙ୍କୁ ।
ସରବେ ବୋଲାଇବେ ଶୂଦ୍ର ନ ଥିବ ଭେଦଭାବ କା'ର ।
ଯେମନ୍ତେ କ୍ଷୁଦ୍ର ମହୁମାଛି ଶ୍ରମ କରିଣ ଖାଉଅଛି,
ତେମନ୍ତେ ସର୍ବେ ଶ୍ରମ କରି ଖାଇବେ ନିଜ ପେଟଭରି ।
ବିନା ଶ୍ରମରେ କେହି କେବେ ଆମ ରାଇଜେ ନ ପଶିବେ,
ସାଧୁ ସନ୍ନ୍ୟାସୀ ଯୋଗୀ ସବୁ ଆମ ରାଇଜୁଁ ତଡ଼ିଦେବୁ ।
ନାକ କାନ ଯେ ଅଖି ମୁଦି ପର ଉପରେ ଗ୍ରାସ ଲଦି,
ତପସ୍ୟା ତ୍ୟାଗର ଛଳନା ଆମ ରାଇଜେ ହେବ ମନା ।
ସରବେ ଭୋଗ ଅଏସରେ ରହିବେ ଆମ ରାଇଜରେ ।
ରାଜ୍ୟର ଯେତେକ ସୁନ୍ଦରୀ ହେବେ ସଭିଙ୍କ ମନୋହାରୀ,
ନାରୀର ଯହିଁ ତହିଁ ଇଚ୍ଛା ଗମନ କରିବ ସ୍ୱଇଚ୍ଛା ।
ବିବାହ ପ୍ରଥା ଯିବ ଉଠି ବନ୍ଧା ନୋହିବେ କେହି କା'ଠି ।
ଦେଶର ତରୁଣୀ ଯେତେକ ଧରିବେ କୁନ୍ତୀଙ୍କର ପଥ;
ତେବେଟି ଯାଇ ଏ ରାଇଜେ ଭୀମ ଅର୍ଜୁନ ସମ୍ଭବିବେ ।

୭ । ପ୍ରଶ୍ନ—ସରକାର ଓ ବିପକ୍ଷ ଦଳ ଉଭୟ କପର ସତ୍ୟ ଜାଣିବାରେ ଅସମର୍ଥ ହେଉଛନ୍ତି ।

ବିଷ୍ଣୁ ଉବାଚ

* ଏ ରୂପେ ଏହି ସରକାର ପୁଣି ଯେ ବିପକ୍ଷର ଦଳ;

* ସରକାର ଏବଂ ବିରୋଧୀ ଦଳମାନେ ଉଭୟ ଭ୍ରାନ୍ତ ଭାବରେ ଆଂଶିକ ସତ୍ୟକୁ ପୂର୍ଣ୍ଣ ସତ୍ୟ ଭାବି ସର୍ବଜାନତା ହୋଇପଡ଼ନ୍ତି ।

ଦୁହେଁ ନାଦନ୍ତି ପରସ୍ପରେ        କେ ସତ୍ୟ ନ ବୁଝଂଇ ଭଲେ ।
ଦୁହେଁ କହନ୍ତି ଆମେ ସଚ୍ଚା        ତୁ ଅଛୁ ମିଛୁଆଙ୍କ ବୋପା ।
ସର୍କାର ନିଜକୁ ବାହ୍ୟରେ        ସର୍ବାଙ୍ଗ ସୁନ୍ଦ ରାଇଜରେ,
ସର୍ବ ମଙ୍ଗଳମୟ ମୁହିଁ        ଦୋଷତ୍ରୁଟି ମୋ କିଛି ନାହିଁ ।



ରାଜ୍ୟରେ ଯେତେକ ସୁନ୍ଦରୀ        ହେବେ ସବୁଙ୍କ ମନୋହାରୀ ।
—ପୃ ୧୨

ବିପକ୍ଷ ଦଳ ଦ୍ୟନ୍ତି ମତ        ଅମର କଥା ଖାଣ୍ଟି ସତ ।
ସର୍କାର ଭ୍ରମ ଯେ କରଇ        ପ୍ରଜାଙ୍କୁ ଶୋଷଣେ ମାରଇ
ଆମ ବାଟକୁ ନ ଧରିଲେ        ସ୍ୱର୍ଗରାଜ୍ୟ କି ହେବ ଭଲେ ?
ଏକ ଯେ ବୃକ୍ଷ କୋଟରରେ        ବିବିଧ ଜୀବ ବାସ କରେ ।

ନିତ୍ୟ ନୂତନ ବର୍ଣ୍ଣ ହୋଇ ଏକ ରଙ୍ଗେ ସେ ନ ରହଇ।
ଆଜ ଯଦ୍ୟପି ହଳଦିଆ, କାଲିକି ହୁଅଇ ଶାଗୁଆ।
ଅନେକ ଏକଇ କୃଷକ ବନ୍ଧୁଙ୍କୁ ତାର ଭାଷିଲେକ।
ଅଦ୍ଭୁତ ଜୀବ ଦେଖିଲଇଁ ସୁନାବରଣ ସେ ଅଟଇ।
ବନ୍ଧୁ କହିଲା ଏହା ମିଛ ସୁନେଲି ରଙ୍ଗ ସେ ନୁହେଁ ତ,
ଶାଗୁଆ ରଙ୍ଗ ଅଟେ ସେହୁ ଦେଖିଛୁ ଏ ଆଖିରେ ମୁହିଁ।
ଏମନ୍ତେ ଦୁଇ ବନ୍ଧୁ ମିଳି କଳି କରିଲେ ସତ୍ୟ ହୁଡ଼ି।
ସେ ବୃକ୍ଷ ପାଶରେ ସନ୍ନ୍ୟାସୀ ଧୁନି ଜାଳିଣ ଥିଲା ବସି।
ତାହାଙ୍କୁ ପଚାରିଲେ ଯାଇ ସତ୍ୟ ଘଟନା କୁହ ତୁହି।
ସେ ଯୋଗୀ କହିଲା ଯା ଶୁଣ ତାହା ମୁଁ କହୁଅଛୁ ପୁଣ।

## ସନ୍ନ୍ୟାସୀ ଉବାଚ

ପ୍ରକୃତ ସତ୍ୟ ନ ଜାଣିଣ ବିବାଦେ ଅଛ ଯେ ମାତିଣ।
ମୁହିଁ ଯେ କେତେକାଳୁ ଅସି ଏ ବୃକ୍ଷତଳେ ଅଛୁ ବସି।
ଏ ବହୁରୂପୀ ଜୀବକୁଟି ଦେଖିଛୁ କେତେ ମୋର ଆଖି।
କେବେ ହଳଦୀ କେବେ ନେଳୀ କେବେ ସାବଜା କେବେ କାଳି,
ଏରୂପେ ନାନା ନୂଆରଙ୍ଗ ଧରଇ ଏ ବିଚିତ୍ର ଜୀବ।
ବୃଥା ବିବାଦେ ନ ମଜିଣ ଖାଣ୍ଟି ସତ୍ୟକୁ ଏବେ ଜାଣ।

## ବସ୍ତୁ ଉବାଚ

ବସ୍ତୁ ବୋଲନ୍ତି ଶୁଣ ଉମା କଳିଯୁଗର ଏ ମହିମା।
ସର୍ବାବଳର ସ୍କୁଲର ପୁଣି ଯେ ବିପକ୍ଷର ଲୋକ,
ଖାଣ୍ଟି ସତ୍ୟଙ୍କୁ ନ ବୁଝନ୍ତି ବାଦବିବାଦେ ମତ୍ତ ହୋନ୍ତି।
କେ ବୋଲେ ମୁ ଚରମ ପନ୍ଥୀ ସର୍ବାର ନରମା ଅଟନ୍ତି।

ମାନ୍ଦା ଦଳଅ ସରକାର　　ବିପ୍ଳବ କରନ୍ତି ବିଫଳ ।
ଏ ସରକାର ନ ତଡ଼ିଲେ　　ବିପ୍ଳବ ହେବ ନାହିଁ ଭଲେ ।
ସରକାର ଯେ ମୂଢ଼ଭାବେ　　ନିଜକୁ ସର୍ବେସର୍ବା ଭାବେ ।
ବିପ୍ଳବ ନାମେ କମ୍ପି ଡ଼ରେ　　ଉଗ୍ରପନ୍ଥୀଙ୍କି ବନ୍ଦୀ କରେ ।
ଅପୂର୍ବ ଏହି ଗ୍ରନ୍ଥସାର　　କଳି-କଲ୍ମଷ ରୋଗହର,
ଶ୍ରଦ୍ଧାରେ ଏହା ଯେ ପଢ଼ିବ　　ତା ହୃଦେ ସତ୍ୟ ପ୍ରକାଶିବ ।

ଇତି ଶ୍ରୀ ଧର୍ମରାଜ୍ୟ ପ୍ରଥମ ଖଣ୍ଡେ ବିଷ୍ଣୁ-ପାର୍ବତୀ କଥୋପକଥନେ ସରକାରୀ କଳ ଓ ବିପକ୍ଷ ଦଳମାନଙ୍କର ସ୍ୱରୂପ ବର୍ଣ୍ଣନା ନାମ ଦ୍ୱିତୀୟ ଅଧ୍ୟାୟ ।

—*—

# ତୃତୀୟ ଅଧ୍ୟାୟ

## ଭାବୀ ପ୍ରଳୟର ରୂପରେଖା

୮ । ପ୍ରଶ୍ନ—ହିଂସା ଓ ଅସତ୍ୟ କପଟ ଚରମ ସୀମାକୁ ଗଲାଣି ?

### ବିଷ୍ଣୁ ଉବାଚ

ପଙ୍ଗୁ ବେଶରେ ଚକ୍ରପାଣି　　ପାର୍ବତୀ ଆଗରେ ବଖାଣି ।
ବୋଲନ୍ତି ମାଗୋ ଶୁଣ ତୁହି　　ଯେମନ୍ତେ ଧ୍ୱଂସ ହୁଏ ମହୀ ।
ଅନ୍ନ ବସ୍ତ୍ରର ମୂଲ୍ୟମାନ　　ବଢ଼ଇ କ୍ଷିପ୍ରତରେ ଜାଣ ।
ମୂଲିଆ ମୂଲ ବଢ଼ାଉଛି　　କାମରେ ହେଳା ଯେ କରୁଛି ।
ବେସରକାରୀ ସରକାରୀ　　ଶ୍ରମିକ ନିମ୍ନ କର୍ମଚାରୀ,
ଧର୍ମଘଟର ଅସ୍ତ୍ର ଧର　　ମହଙ୍ଗା ଭତ୍ତା ନିଅନ୍ତି ମାର ।

ସର୍ଦ୍ଦାର ଦିଏ କଳମୋଡ଼ ଭାତ ଲୁଗାର ହୁଏ ପଡ଼ ।
ଖାଇବା ପିନ୍ଧିବା ଉପରେ ଟିକସ ବସଇ କୌଶଳେ,
ଲୋକେ ହୁଅନ୍ତି ମହା ଖୁସି * ଗ୍ଲେବ ବଜାରେ ଯାନ୍ତି ଭାସି ।
ବଢ଼ଇ ପାପ ବେଶ୍ୟାବେଳ ଧରମ ଯାଏ ରସାତଳ ।
ଲୋକେ ଚହାଇଲେ ଝଙ୍କାମୁହାଁ ଦିଶିଲ ନାହିଁ ତାଙ୍କୁ ରାହା ।
ପର ପୁରୁଷ ପର ନାରୀ, ପରସ୍ପରକୁ ଯାନ୍ତି ଭଲ ।



ଲୋକେ ହୁଅନ୍ତି ମହାଖୁସି, ଗ୍ଲେବ ବଜାରେ ଯାନ୍ତି ଭାସି ।
—ପୃ ୨୦

ନାରୀଙ୍କ ଯୋଗୁଁ ହିଂସାଗୋଳ ବଢ଼ଇ ଜାଣ ବେଶ୍ୟାବେଳ ।
ନାରୀଏ ଅଗୁଆ ହୁଅନ୍ତି ଶୋଭାଯାତ୍ରାରେ ବାହାରନ୍ତି ।

* ଗ୍ଲେବ ବଜାର କାରସାଦ୍ଧ ବେଶ୍ୟାବେଳ ବଢ଼ୁଛି ।

ନଗ୍ରେ ମଟର ଟ୍ରାମଗାଡ଼ି ନାରୀମାନେ ଯେ ଦ୍ୟନ୍ତି ପୋଡ଼ି ।
ରାଜନୈତିକ ଦଳମାନେ ସଭା କରନ୍ତି ସ୍ଥାନେ ସ୍ଥାନେ;
ମନ୍ତ୍ରୀମାନଙ୍କୁ ଦ୍ୟନ୍ତି ଗାଳି ବୋଲନ୍ତି ଯାଅ ଗାଦି ଛାଡ଼ି ।
ସରକାର ଯେ ରୋଷ ବହି, ଦମନ ଆଇନ ଚଳାଇ,
ରାଜଦ୍ରୋହର ଅପରାଧେ ଠୁଙ୍କଇ ତାହାଙ୍କୁ ମିଆଦେ ।
ସଭା ସମିତି ଶୋଭାଯାତ୍ରା ହୁଏ ନିଷେଧ ଦେଶସାରା ।
ନିଷେଧ କରି ବେଖାତିର ଥୋକେ କରନ୍ତି ପଟୁଆର ।
ଗୁପତେ ହାତବୋମା ଠୁଙ୍କି ଆତଙ୍କ କରନ୍ତି ଯେ ସୃଷ୍ଟି ।
ଏଣୁ ରାଗରେ ସରକାର କରଇ ବନ୍ଧୁକ ଫଏର ।
ଏଥିରେ କେତେକ ମରନ୍ତି ରାଜଦ୍ରୋହୀଏ ଖୁସି ହ୍ୱନ୍ତି ।
ଏହାକୁ କରି ନାନା ଆଳ ଅହୁରି ଲଗାନ୍ତି ଯେ ଗୋଳ ।
ତିଳକୁ ତାଳପରି କରି ମିଛର ସଂବାଦ ପ୍ରଚାରି,
ସରକାରଙ୍କ ପ୍ରତିରୋଧେ ଭେଳାଇ ଦ୍ୟନ୍ତି ପ୍ରଜାବର୍ଗେ ।
ପ୍ରଜାଏ କ୍ଷେପି ଯେ ଉଠନ୍ତି ସର୍କାର ବିମୁଖ ହୁଅନ୍ତି ।
ସର୍କାର ବିରୋଧୀ ଦଳଅ ହୋଇଣ ଲୋକଙ୍କ ଆଡ଼ୁଆ
ସତ ମିଛକୁ ଯାନ୍ତି ଗାଇ ଆଗାମୀ ନିର୍ବାଚନ ପାଇଁ ।
ଲୋକେ ଯେ କନ୍ତୁ ସୁନିପୁଣ ଜାଣନ୍ତି କା'ର କେତେ ଗୁଣ ।
ଭାବନ୍ତି ମନେ ମନେ ହସି ତୁମେ ବା କେଉଁ ଦେବ ଋଷି ?
ଲଙ୍କାର ଯେତେକ ଅସୁର ସମସ୍ତେ ରାବଣ ପ୍ରକାର ।
ଯେଉଁମାନଙ୍କୁ ଭୋଟ ଦେଲୁ ଲାଟ ସଭାକୁ ପଠାଇଲୁ,
ଯେଉଁମାନଙ୍କ ସେବାଧର୍ମେ ଭୋଳ ହୋଇଣ ଗଲୁ ଆମେ,
ସେମାନେ ରାବଣର ରୀତି ଧରି ଆମକୁ ଦେଲେ ଠକି ।
ତୁମେମାନେ ଯେ ସେହିପରି କ୍ଷମତା ଆସନରେ ଚଢ଼ି,
ପୁଷ୍ପକଯାନେ ଉଡ଼ିବୁଲି ଆପଣାପାଇଁ ସୀତା ହରି

ଅମକୁ ନ ଦେବ ଭଣ୍ଡିଣ ତାହାର କି ଅଛି ପ୍ରମାଣ ?
ଏହାପରି ଯେ ସରକାର ପୁଣି ଯେ ବିପକ୍ଷର ଦଳ,
ଦୁହେଁ ହିଂସନ୍ତି ପରସ୍ପରେ ପ୍ରଜାଙ୍କୁ ଭେଳାଇ ସକଳେ ।
ସରକାରଙ୍କ ନଳଗୁଲା ନ୍ୟସ୍ତ ସ୍ୱାର୍ଥଙ୍କ ଗୁପ୍ତ ଚର,
ଶୁମ୍ଭ ନିଶୁମ୍ଭ ବେଶ ଧରି ଯୁଝନ୍ତି ପ୍ରାଣେ ମାୟା ଛାଡ଼ି ।



ନଷ୍ଟେ ମଟର ଟ୍ରାମଗାଡ଼ି, ନାରୀମାନେ ଯେ ବ୍ୟସ୍ତ ପୋଡ଼ି ।
—ପୃ ୨୯

ଘୋର ମାୟାରେ ହୋଇ ବଶ କରନ୍ତି ପରସ୍ପରେ ଧ୍ୱଂସ ।
କାଳିଆ ଫିସାଦିଆ ଷ୍ଟେର ମୁନାଫାଖୋର ଡାକ୍ତର,

ଚଣ୍ଡମୁଣ୍ଡଙ୍କ ବଂଶଧର    ପ୍ରବଳ ହୋନ୍ତି ବେଢ଼ବେଳ ।
ତୋର ମାୟାରେ ହୋଇ ବଶ    ଅଳପ ଧନେ ହେବେ ଧ୍ୱଂସ ।
ସତକୁ ମିଛ ମିଛେ ସତ    କରିବାରେ ଯେ ସିଦ୍ଧହସ୍ତ,
ରକତ ବୀର୍ଯ୍ୟ ମହାବାହୁ    ମହିଷ ସେନାପତି ଏହୁ ;
ସାକ୍ଷୀ ବରଠବାହିନୀ    ନାନା ଅୟୁଧ କରେ ଘେନି,
ଯୁଝିବ ଆସି ତୋର ସଙ୍ଗେ    ତୁ ତାକୁ ବିନାଶିବୁ ରଙ୍ଗେ ।
* ମିଛ ମାମଲା ମକଦ୍ଦମା    କାଳ କ୍ଷେପଣ କଠକଣା ;
ଏ ଆଦି ନାନା ଫନ୍ଦ ଭେଇ    ପ୍ରଜା ରକତ ଶୋଷେ ସେହି ।
ଚଣ୍ଡୀ ଚାମୁଣ୍ଡୀ ଚାଉଁଶାଇ    ବଡ଼ି ବୁଢ଼ୀ ଯେ ବସନ୍ତେଇ ;
ଏ ରୂପେ ମାଗୋ କୋଟି କୋଟି ଭୈରବୀ ରୂପେ ତୁ ପ୍ରକଟି,
ପିଇବୁ ରକ୍ତବୀର୍ଯ୍ୟ ରକ୍ତ    ନାଶ ହେବ ସେ ମୂଢ଼ ଦୈତ୍ୟ ।

୯ । ପ୍ରଶ୍ନ—ଭବୀ-ମହାଯୁଦ୍ଧରେ ହିଂସାରୂପୀ ମହିଷାସୁରକୁ ମହାକାଳୀ କିପରି ଧ୍ୱଂସ କରିବେ ?

ବିଷ୍ଣୁ ବୋଲନ୍ତି ମାଗୋ ଶୁଣ    ଏଥୁ ଅନ୍ତରେ କଥାମାନ,
ରକତବୀର୍ଯ୍ୟ ମୃତ୍ୟୁ ଅନ୍ତେ    ଧାଇଁ ଆସିବ ରୁଷ୍ଟ ଚିତ୍ତେ,
ମହିଷାସୁର ବୀରବର    ନାନା ଅୟୁଧେ ଭୟଙ୍କର ।
ଠାକୁ ବୋଲିଣ ଯାନ ତାର    ନ ମାନେ ହାଡ଼ ଚିପ ଖାଲ,
ଇଚ୍ଛା ଯହିଁକି ଚଳେ ତହିଁ    କେ ତାର ଗତି ନ ରୋଧଇ ।
ସେ ଗାଡ଼ି ଭିତରେ କୁମତି    ଲୁଚି କରଇ ଗୋଳାବୃଷ୍ଟି ।
ଅତି ଠାଣୁଆ ଗାଡ଼ି ସେହି    ଭେଦ ନ ପାରେ ଗୁଳି ତହିଁ ।

---

* ମକଦ୍ଦମାରେ ବାରମ୍ବାର ତାରିଖ ଗଡ଼ାଇବା ଫଳରେ ଗରିବ-ଲୋକ ଟଙ୍କା ଖର୍ଚ୍ଚକରି ମକଦ୍ଦମା ଚଳାଇ ପାରେ ନାହିଁ ।

ସେ ଯାନ ସଂହାରିବା ପାଇଁ  ବୋମା ବର୍ଷିବୁ ମାଗୋ ତୁହି ।
ବିରାଟରୂପା ଥାଟ ଏକ  ତୋ ଦେହୁଁ କରିବୁ ତୁ ଜାତ ।
ସେ ନାରାୟଣୀ ସୈନ୍ୟମାନେ  ବୁଲି ଯେ ଥିବେ ନଗ୍ରେ ଗ୍ରାମେ ।
ନଗର ଗ୍ରାମ ରାସ୍ତାଘାଟେ  ବାରୁଦ ଖଞ୍ଜିଦେବେ ପ୍ରସ୍ତେ ।
ମହିଷାସୁର ଟାଙ୍କୁଗାଡ଼ି  ପଥେ ଅସନ୍ତେ ଯିବ ଜଳି ।
ମେଘ ଭିତରେ ଯେବେ ସେହି  ଉଡ଼ାଜାହାଜେ ଲୁଚି ରହି,
ତୋ ଶିରେ ବୋମା ଓଜାଡ଼ିବ  ତୋର ଥାଟଙ୍କୁ ସଂହାରିବ,
କରିବୁ କଳକଳା ନାଦ  ସେ ନାଦେ ବିସ୍ଫୁର କମ୍ପିବ ।
ଗଗନଭେଦୀ ଘଡ଼ଘଡ଼ି  ମାଗୋ ଦେବୁ ତୁ ଘୋରରଡ଼ି ।
ଅସୁର ଶୁଣି ମୂର୍ଚ୍ଛାଯିବ  ଆକାଶୁ ଖସିଣ ପଡ଼ିବ ।
ପାତାଳୀ ବୋଟ ଧରି ସେହି  ଜଳରେ ଯେବେ ଛପିରହି,
ତୋ ସଙ୍ଗେ ସମର କରିବ  ବାଣିଜ୍ୟ ପୋତ ବୁଡ଼ାଇବ,
ପାତାଳ ଗଙ୍ଗା, ବରୁଣାଣି  ନାଗ ନାଗୁଣୀ ଡପୁକାଇ,
ବିକଟ ଅଟ୍ଟହାସ କରି  ଜଳ ମନ୍ଥିକୁ ଦେବୁ ଧାଡ଼ି ।
ପାତାଳେ ନ ପାଇଣ ଠାବ  ଅସୁର ବାହାରି ଆସିବ ।
ଆଟମି ବୋମା କରେ ଧରି  ଫିଙ୍ଗିବ ତୋତେ ଲକ୍ଷ୍ୟ କରି ।
ସେ ବୋମା ଅତି ଭୟଙ୍କର  ହେଲେ ନାଶଇ ଜନପୁର ।
ତାହା ବାଜନ୍ତେ ତୋର ଶିର  ରୁଧିର ବହିବ ପ୍ରଖର ।
କୋପେ ହୋଇବୁ ଜରଜର  ଦଶିବୁ ଘୋର ବିକଟାଳ ।
ହସିବୁ ଟହ ଟହ ହୋଇ  ବାଘୁଣୀ ବେଶେ ମାଗୋ ତୁହି ।
ଉଲଙ୍ଗ ରୂପ ଦେଖି ତୋର  ମୋହ ଯେ ହୋଇବ ଅସୁର ।
ତା ମୁଣ୍ଡ ଛେଦ ଖଡ଼୍ଗରେ  ଧରିବୁ ତୁହି ବାମକରେ ।
ତହୁଁ ବିପୁର ତୁ ଘୁରିବୁ  ଦେବ ଦାନବ ସଂହାରିବୁ ।
ତୋହର କୋପାଗ୍ନି ପ୍ରଜ୍ୱଳ  ଗ୍ରାମ ନଗର ଦେବ ଜାଳି ।

ନରମୁଣ୍ଡର ମାଳାଗୁନ୍ଥି    ଲମ୍ବାଇ ଗଳେ ହେବୁ ତୃପ୍ତି ।
ମିଲର୍ କାରଖାନାମାନ    ସିନେମା ନାଟ୍ୟ ନିକେତନ,
କୋର୍ଟ କଚେରି ଅଦାଲତ    ସବୁ କରିବୁ ଭସ୍ମୀଭୁତ ।
* ଅଟମି ବୋମା କୋଟି କୋଟି ତୋ ଅଙ୍ଗୁ ଝଡ଼ଣି ଝଟେତ;



ଆଟମବୋମା କୋଟି କୋଟି·········
·········କ୍ଷଣକେ ଦେବ ଧୂଳିକରି ।

— ପୃ ୨୫

* ଅଟମ ବୋମା ଯୁଦ୍ଧରେ ନଗରମାନଙ୍କର ଧ୍ୱଂସ ଘଟିବା ସୁନିଶ୍ଚିତ ।

ରାଜଧାନୀର କୋଠାବାଡ଼ି — କ୍ଷଣକେ ହେବ ଧୂଳିକର ।
ସବୁ ପାପର ଜନ୍ମସ୍ଥାନ — ଭୋଗ ବିଳାସ ନିକେତନ,
ନଗରେ ନଗରେ ପଡ଼ିବ — ଗୋଟିଏ ଇଟୁର ନ ଯିବ ।
ନିଜକୁ ସଭ୍ୟ ବୋଲି ଗର୍ବ — କରଇ ଆଜ ଯେ ମାନବ,
ସେମାନେ ସବୁ ଧ୍ୱଂସ ହେବେ — ତିଷ୍ଠିବେ ନାହିଁ କେହୁ ଭବେ ।
ପ୍ରସୂତ ଶିଶୁ ରୋଗୀ ବୃଦ୍ଧ — ଏମାନଙ୍କର ଆର୍ତ୍ତନାଦ,
ଶୁଣିବା ପାଇଁ କେ ନ ଥିବେ — ସର୍ବେ ତୋ କୋପେ ଜଳିଯିବେ ।
ସେ ଆର୍ତ୍ତନାଦ ଶୁଣି ତୁହି — ହସିବୁ ଠହଠହ ହୋଇ ।
ଜାଗାକୁ ଜାଗା ହୋଇ ଜୁଡ଼ — ପଡ଼ି ରହିବ ସଢ଼ା ମଢ଼ ।
ଶିବା ଗୃଧିଣୀ ବେଶେ ତୁହି — ଖାଇବୁ ତାହା ତୃପ୍ତ ହୋଇ ।

ଇତି ଶ୍ରୀ ଧର୍ମରାଜ୍ୟେ ପ୍ରଥମଖଣ୍ଡେ ବିଷ୍ଣୁପାର୍ବତୀ କଥୋପକଥନେ ଭାବୀ ପ୍ରଳୟର ରୂପରେଖା ବର୍ଣ୍ଣନ ନାମ ତୃତୀୟ ଅଧ୍ୟାୟ ।

—*—

# ଚତୁର୍ଥ ଅଧ୍ୟାୟ

## ଉତ୍ପାଦନ, ବଣ୍ଟନ ଓ ଶାସନର ପ୍ରାଚୀନ କଳ୍ପନା

*୧୦ । ପ୍ରଶ୍ନ—ଅଷ୍ଟମବୋମା ଯୁଦ୍ଧରୁ ବା ମହାକାଳୀଙ୍କ ପ୍ରଳୟ ଧ୍ୱଂସାରୁ କେଉଁମାନେ ବାନ୍ଧୁ ପାଇବାର ସମ୍ଭାବନା ?।

### ବଶିଷ୍ଠ ଉବାଚ

ବଶିଷ୍ଠ ବୋଲନ୍ତି ଉମା ଶୁଣ  ଏଥୁ ଅନ୍ତରେ କଥାମାନ ।
ମହିଷାସୁର ବଧ କରି  ମହାକାଳୀର ବେଶଧରି,
ଅରାଜକତା ସୃଷ୍ଟି କରି  ନିଷ୍ଠୁର ଯିବୁ ଧ୍ୱଂସ କରି ।
ସରବେ ଧ୍ୱଂସ ଯାଇ ହେବେ  ରହିବେ ନାହିଁ କେହି ଭବେ ।
କେବଳ ଖେତ ମଜୁରିଆ  ଦୀନ ଦୁଃଖୀ ଯେ ଖଟିଖିଆ,
ଏ ବେଶ ବିଧାତା ଯେ ହୋଇ  ପଳାଇ ଯିବେ ବନଭୂଇଁ ।
ଆଶ୍ରମବାସୀ ସାଧୁସନ୍ଥେ  ରହିବେ ଯାଇଁ ବନପ୍ରାନ୍ତେ,
ବନର କନ୍ଦ ଫଳମୂଳ  ଖାଇ କଟାଇ ନେବେ କାଳ ।
ଲୁଳା କଣା ଯେ ପଙ୍ଗୁ ହୋଇ  ଅନ୍ଧ ଭିକାରି ବେଶେ ମୁହିଁ,
ଭଙ୍ଗା କୋଠାର ଧ୍ୱଂସସ୍ତୂପେ  ପୋଡ଼ାଗ୍ରାମର ବାଟେ ଘାଟେ,
ଡରେ ଭୟେ ଜଡ଼ ସଡ଼ ହୋଇ  ତାକୁ ଯେ ଥିବ ବାନ୍ଧୁ ବାନ୍ଧୁ ।
କାହୁଁ ପାଗଳୀ ବେଶେ ଆସି  ଖତାଇ ହେବୁ ମୋତେ ହସି,
ଛେଲିଆ ମୋଠାରୁ ଛଡ଼ାଇ  ମୋର ଅହାର ଯିବୁ ଖାଇ ।

---

* ଯେଉଁମାନଙ୍କୁ ଆମ୍ଭେମାନେ ନଗଣ୍ୟ, ମୂର୍ଖ, ହେୟ ବୋଲି ଭାବୁ, ସେହିମାନେହିଁ ଅଷ୍ଟମବୋମା ଯୁଦ୍ଧରୁ ରକ୍ଷା ପାଇବେ ।

ଏ ବାଣ୍ଟରଙ୍ଗ ମଞ୍ଚେ ମୁହିଁ ଏମନ୍ତେ ବହୁରୂପା ହୋଇ,
ତୋର ସଂହାର କାର୍ଯ୍ୟେ ମାଆ ହେଉଛି ଥିବି ତୋତେ ସାହା ।
ଲକ୍ଷ ଲକ୍ଷ ଯେ ଅଶ୍ୱାରୋହୀ ମୋ ଦେହୁ ସୃଷ୍ଟିକରି ମୁହିଁ,
ଯେତେକ ଦୁଷ୍ଟ ଥିବେ ଛକ ତାହାଙ୍କୁ ପକାଇବି ଛେକ ।
ତୋମା ବନ୍ଧୁକ ଧ୍ୱଂସ ପରେ କରବାଳ ମୁଁ ଧରି କରେ,
ତୋହ ପଥରେ ଅନୁସରି ତୋର କାର୍ଯ୍ୟକୁ ଯିବି କରି ।
ପାଣି କଣ୍ଟରା ମେହେନ୍ତର ଚଣ୍ଡାଳ ବେଶରେ ଶଙ୍କର,
ଦୁର୍ଗନ୍ଧ ପଙ୍କ ସଢ଼ା ଠାବେ ରହି ନିର୍ଲିପ୍ତ ଯୋଗୀଭାବେ,
ମନେ ମନେ ଯେ ହସିଯିବେ ଡମ୍ବରୁ ବଜାଉଣି ଥିବେ ।
ନଗର ଗ୍ରାମକୁ ସଫାଇ ବିଶୁଦ୍ଧ ପବନ ଯୋଗାଇ,
ସଭିଙ୍କ ଅନ୍ନବସ୍ତ୍ର ପାଇଁ ନିଜେତ ନ ପିନ୍ଧି ନ ଖାଇ,
ଅଧା ଲଙ୍ଗଳା ଉପବାସୀ ହୋଇ କାଟନ୍ତି ଯେ ଦିବାନିଶି,
ନର୍ଦ୍ଦମା ପାଇଖାନା ଆଦି ଧଉତ କରିବାର ଲାଗି,
ଗଙ୍ଗାମାଣ୍ଡିଙ୍କି ମସ୍ତକରେ ବହୁଥାଏ ଯେ ନିରନ୍ତରେ,
ସହର ରାସ୍ତା ଗଳିଛକେ ଯେ ଅଟନ୍ତି ବଢ଼ଶୁଣ୍ଡେ,
ଆଲୁଅ ଯୋଗାଇବା ପାଇଁ ଭାଲେ ଚନ୍ଦ୍ରକୁ ବହୁଥାଇ,
ସେହି ଯେ ଶିବ ଶମ୍ଭୁରୂପୀ ଲୀଳାମୟୀ ତୋ ଲୀଳା ଦେଖି
ମନେ ମନେ ଯେ ହସିଯିବେ ଡମ୍ବରୁ ବଜାଉଣି ଥିବେ ।

୧୧ । ପ୍ରଶ୍ନ—ଶାସନକଳର ସୂକ୍ଷ୍ମଶକ୍ତି ସର୍ବତ୍ୟାଗୀ ସାଧୁ ସନ୍ନ୍ୟାସୀଙ୍କ ହାତରେ ରହିଲେ ପ୍ରକୃତ ଗଣତନ୍ତ୍ର ସ୍ଥାୟୀ ହୁଏ କପରି ?

ବସ୍ତୁ ବୋଲନ୍ତି ଉମା ଶୁଣ ଶିବଙ୍କ ହସିବା କାରଣ ।
ପାଣି କଣ୍ଟରା ମେହେନ୍ତର ଚଣ୍ଡାଳ ବେଶରେ ଶଙ୍କର,

ଦୂର୍ଗନ୍ଧ ପଙ୍କସଢ଼ା ଠାବେ    ରହନ୍ତି ଯେହୁ ଯୋଗୀଭାବେ,
ଲୀଳାମୟୀ ତୋ ଲୀଳା ଦେଖି    ମନେ ହୋଇବେ ବହୁ ସୁଖୀ ।
ବୋଲିବେ ଦେବୀ ଅଛୁ। କାଲି,    ଦୁନିଆ ପୋଡ଼ିଜାଳି ଦେଲି ।
ମାନବେ ସ୍ୱାର୍ଥବଶ ହେଲେ    ମୋହର ଅଦର୍ଶ ତେଜିଲେ ।
ମୋର ଅସନ ନୀଚ କଲେ    ଧନୀଙ୍କି ଉଚ୍ଚାସନ ଦେଲେ ।
୧ଧନ କ୍ଷମତା ଏକ ହୋଇ    ରହିଲା ଏକଠାବେ ଯାଇଁ ।
କ୍ଷମତା ଅସନରେ ଯେହୁ    ଭିକାରି ବ୍ରତ ଧରୁ ସେହୁ,
ଏହାହିଁ ମୋର ଶିକ୍ଷା ଥିଲା    ଏକଥା ମାନବ ଭୁଲିଲା ।
ଧନ କ୍ଷମତା ଏକଠାରେ    ରହିଲେ ଜନ୍ମନ୍ତି ଅସୁରେ ।
ସେହି କଥାଟି ଏବେ ହେଲା    ପ୍ରଳୟ ହିଂସା ଉପୁଜିଲା ।
ଯୋଗୀ ସନ୍ନ୍ୟାସୀ ବେଶ ହୋଇ    ରଜାଙ୍କୁ ଶାସୁଥିଲି ମୁହିଁ ।
ଭିକ୍ଷାଥାଳ ମୁଁ କରେ ଘେନି    ଧନୀଙ୍କି କରୁଥିଲି ଦାନୀ ।
ଚଣ୍ଡାଳ ବେଶ ହୋଇ ମୁହିଁ    ଗ୍ରାମ ନଗର ସଫାକରି,
ଦୁର୍ଗନ୍ଧ ପଙ୍କ ସଢ଼ା ଠାବେ    ରହି ନିର୍ଲିପ୍ତ ଯୋଗୀଭାବେ,
ବ୍ରାହ୍ମଣ ଚଣ୍ଡାଳ ଭିତରେ    ଗୋବର ଗାଡ଼ ଗଙ୍ଗାଜଳେ,
କିଛି ପ୍ରଭେଦ ନାହିଁ ବୋଲି    ବ୍ରାହ୍ମଣେ ଶିଖାଉ ମୁଁ ଥିଲି ।
ବ୍ରାହ୍ମଣେ ଭିକ୍ଷାବ୍ରତ ପାଳି    କୌପୀନ ମାତ୍ର ସାର କରି,
୨ରଜା ଉପରେ ଥିଲେ ରଜା    ସୁଖୀ ସେ ଥିଲେ ସର୍ବପ୍ରଜା ।
ଚଣ୍ଡାଳି ବେଶେ ଏ ରୂପେଣ    ପରଖୁଥିଲି ମୁଁ ବ୍ରାହ୍ମଣ ।

---

୧ ଧନବଳ, ଜନବଳ ଓ କ୍ଷମତାବଳ ଜଣଙ୍କ ହାତରେ ରହିଯିବା ଦ୍ୱାରା ହିଟଲିରୀ ଶାସନର ଉଦ୍ଭବ ଘଟେ ।

୨ ରାଷ୍ଟ୍ରପତି, ସମାଜପତି ଓ ଭୂତପତି ଏହି ତିନୀଙ୍କ ଅଲଗା ଧନ, ଜନ ଓ କ୍ଷମତା ବାଣ୍ଟି ହୋଇ ରହିବା ଦ୍ୱାରାହିଁ ଗଣତନ୍ତ୍ରର ସ୍ଥାୟିତ୍ୱ ରହେ ।

ଧନବନ୍ତ ଯେ ବଳବନ୍ତ
ଏରୂପେ ନୃପତି ସମ୍ରାଟ,
କ୍ଷମତା ଯାଙ୍କଠାରୁ ଯାଇ
ଗରିବ ଠାରେ ଥିଲା ରହି ।
ମୁଁ ଅବଧୂତ ଯୋଗୀବେଶେ
ରହିଣି ଶ୍ମଶାନ ପ୍ରଦେଶେ,
ରଜା ନ ହୋଇ ରାଜପଣ
କରୁ ଯେ ଥିଲି ମୁଁ ସୁଚିକ୍କଣ ।
ଆଜି ଏ କଥା ଓଲଟିଲା
ଭୋଟ ସୁଆଙ୍ଗ ପାଲା ହେଲା;
ଶକତି ଯୋଗୀଠାରୁ ଗଲା
ଭୋଗୀ ଭୋଗରେ ସାହା ହେଲା ।



**କ୍ଷମତା ଆସନରେ ଯେହୁ, ରଜାର ଭୂତ ଧରୁ ସେହୁ ।**

—ପୃ ୨୯

କ୍ଷମତା ଆସନରେ ବସି
ହୁଏ ଯେ ଭୋଗରେ ପ୍ରୟାସୀ,
ସେହି ଯେ ପାଲଟି ଅସୁର
ପ୍ରଜାଙ୍କୁ ଦିଏ ଦୁଃଖେ ଘୋର ।
ସେହି କଥା ତ ଏବେ ହେଲା
ପ୍ରଳୟ ହିଂସା ଉପୁଜିଲା ।

ମୁହଁ ଯେ ଅପୂଜା ପଡ଼ିଲା ଅନ୍ଧୁଆଁ ଲୋକେ ବୋଲାଇଲା ।
ସମସ୍ତେ ଖାଇପିଇ ସୁସ୍ଥେ ରହିବା ପାଇଁ ମୁଁ ବନସ୍ତେ,
ନିଶିଦିବସ ଜପ କରେ ସରବେ ସୁଖୀ ହୋନ୍ତୁ ବୋଲେ ।
ମୁଁ ଦିଗମ୍ବର ବେଶ ହୋଇ ଅଖିଅ ଖରାବର୍ଷା ସହି,
ଅଚଳ ସ୍ଥାଣୁ ରୂପଧରି ଅସ୍ଥାନେ ରହିଅଛି ପଡ଼ି ।
କୋଟି କୋଟି ଯେ ନରନାରୀ ଅର୍ଦ୍ଧଭଲଗ୍ନ ଅର୍ଦ୍ଧାହାରୀ,
ଏହାଙ୍କ ପ୍ରତିନିଧି କିଏ ? ଅଖିଅ ଅପିନ୍ଧା ଯେ ରହେ ।
ଭୋଗ୍ୟବସ୍ତୁ ଯା ପାଦେ ଯୋଟେ ତାହାକୁ ଯେହୁ ତେଜି ଆସେ,
ପ୍ରେତଭୂମିରେ ପାରେ ରହି ପ୍ରେତର ଅନ୍ନକୁ ଭୁଞ୍ଜଇ,
ଲେଙ୍ଗୁଡ଼ି ପିନ୍ଧିପାରେ ଯେହି ଶୀତ ବରଷା ଗ୍ରୀଷ୍ମ ସହି,
ନର କପାଳ ଧରି କରେ ମୃତ୍ୟୁ ସଙ୍ଗେ ଯେ କ୍ରୀଡ଼ା କରେ,
ସେହି ସନ୍ନ୍ୟାସୀ ସାଧୁ ଯୋଗୀ ସର୍ବହରାର ପ୍ରତିନିଧି ।
ଅଖିଅ ଅପିନ୍ଧା ଯେ ରହି ଆନେ ଭୁଞ୍ଜାଇ ପାରେ ସେହି ।
ଏହା ଯେ ଖାଣ୍ଟି ଗଣତନ୍ତ୍ର ଭୋଟ ଯେ ପ୍ରହସନ ମାତ୍ର ।
ଏ ସତ୍ୟ ଭୁଲିଲି ମାନବ ପାଆନ୍ତୁ ଏବେ ପରାଭବ ।
ପଙ୍ଗୁ ବେଶରେ ଜଗନ୍ନାଥେ ଅନ୍ନ ବାଣ୍ଟନ୍ତି ଅପ୍ରମିତେ ।
ଠିକେ ତା ବଣ୍ଟା ହେଉଛି କି ସର୍ବେ ତା ପାଉ ଅଛନ୍ତି କି,
ଏହା ଦେଖିବା ପାଇଁ ତାର ଆଖି ଦୁଇଟା ବଡ଼ ବଡ଼ ।
ଏକଥା ରାଜାଏ ଭୁଲିଲେ ଧନ ବାଣ୍ଟିବା ଛାଡ଼ିଦେଲେ ।
ଶ୍ରେଷ୍ଠ ନଜର ବୋଲାଇଲେ ଅପଣା ପେଟ ବଢ଼ାଇଲେ ।
ଦେଖ ଏ ପ୍ରଭୁ ଜଗନ୍ନାଥ ନିଜର ରଖି ନାହିଁ ପେଟ ।
ନିଜକୁ ପଙ୍ଗୁଭାବେ ରଖି ଅନ୍ନ ସେ ଯାଉଅଛି ବାଣ୍ଟି ।
ନେବାକୁ ତାର ନାହିଁ କିଛି ସବୁ ସେ ଦେଉଅଛି ଯାଚି ।
ଅନ୍ନ ବସନ ବଣ୍ଟାଆରି ଛାହା ହାତରେ ହେବ ସାରି,

ଯେ ନିଜ ପେଟ ପିଠି କଥା      ଭାବଇ ନାହିଁ ନିଜ ମଥା ।
ଅକ୍ଷମ ପଙ୍ଗୁଭାବେ ରହି      ସବୁ କ୍ଷମତା ଯେ ଛାଡ଼ଇ,
ଯେ ନିର୍ବିକାର ଅନାସକ୍ତ      ସେ ବାଣ୍ଟିପାରେ ଲୁଗା ଭାତ ।
ଏହା ବିଷ୍ଣୁଙ୍କ ଶିକ୍ଷା ଥିଲା      ଏ କଥା ମାନବ ଭୁଲିଲା ।
ବଡ଼ ଦେଉଳେ ଜଗନ୍ନାଥ      ଖାଲି ପୂଜିଲେ ହେବ କିସ,
ସବୁ ଏ ଜଗନ୍ନାଥ ତତ୍ତ୍ୱ      ଭେଦିଲା ନାହିଁ କା'ର ଚିତ୍ତ ?
ବିଷ୍ଣୁ ଅଂଶରେ ରଜା ଜାତ      ଏହା ରଜାଏ ଭୁଲିଲେ ତ ।
ରାବଣ ବାଟକୁ ଧରିଲେ      ଧନ ବାଣ୍ଟିବା ଛାଡ଼ିଦେଲେ ।
ସାଧୁ ସନ୍ନ୍ୟାସୀ ଯେ ଫକିର      ପଙ୍ଗୁ ଅନାଥ ମେହେନ୍ତର ।
ଏଭାବେ ତ୍ୟାଗୀ ସର୍ବହରା      ହୋଇ ମୁଁ ସହେ ଖରାତରା ।
ଏକଥା ରାଜାଏ ଭୁଲିଲେ      ମୋତେ ନ ଦେଇ ଖାଇଗଲେ ।
* ରାଜାଙ୍କ ଆଦର୍ଶ ସମସ୍ତେ      ଧରିଣ ଚାଲିଲେ ଅବାଟେ ।
ସର୍ବେ ହେବାକୁ ପୁଞ୍ଜିଦାର      ଧନ ଅର୍ଜିବା କଲେ ସାର ।
ଦାନ ଧ୍ୟାନକୁ ପାସୋରିଲେ      ଗରିବ ତଣ୍ଟିକି ଚିପିଲେ ।
ଏଣୁ ଅସୁର ସମ୍ଭବିଲେ      ହିଂସାକୁ ସର୍ବେ ଆଦରିଲେ ।
ଧରମ ଛାଡ଼ିଲା ମାନବ      ପାଆନ୍ତୁ ଏବେ ପରାଭବ ।

୧୭ । ପ୍ରଶ୍ନ—ଉତ୍ପାଦନ, ବଣ୍ଟନ ଓ ଶାସନ ଏ ତିନୋଟା-ଯାକ ଜଣକ ହାତରେ ଏକାଠି ଠୁଳ ରହିବାରୁ କି ବିପଦ ଘଟୁଛି

ବିଷ୍ଣୁ ବୋଲନ୍ତି ଉମା ଶୁଣ      ପ୍ରଳୟ କାଳ କଥାମାନ ।
ପାଣି କଣ୍ଟ୍ରି ମେହେନ୍ତର      ଏ ଆଦି ବେଶରେ ଶଙ୍କର,

*ସର୍ବ ସାଧାରଣ ଯେଉଁମାନଙ୍କୁ ବଡ଼ଲୋକ ବୋଲି ମାନ୍ୟ କରନ୍ତି, ସେହି ଲୋକଙ୍କର ଜୀବନଯାପନ ପ୍ରଣାଳୀକୁ ବି ଅନୁକରଣ କରନ୍ତି ।

ବୋଲିବେ ଦେବୀ ଅଚ୍ଛା କଲ ଦୁନିଆ ନାରଖାର ହେଲା ।
ସର୍ବେ ହେବାକୁ ପୁଞ୍ଜିଦାର ଧନ ଅର୍ଜିବା କଲେ ସାର ।
ଲମ୍ବା କମାନ ଲଗାକଲେ ଅଂଶୀଦାର ଯେ ବୋଲାଇଲେ ।
ଖୋଲିଲା * କଳ କାରଖାନା ବୁଡ଼ିଲା ବ୍ରହ୍ମାର ଚେତନା ।
ତା ହାତ ଅକାମୀ ହୋଇଲା, ଶିଳ୍ପୀକୁଳର ଦାନା ଗଲା ।
ତନ୍ତୀ ତା ତନ୍ତ ଦେଇ ଜାଳି କାରଖାନାକୁ ଗଲା ଚାଲି ।
ତେଲି ତା ତେଲପେଡ଼ା ଛାଡ଼ି ବସିଲା ବାଙ୍କ ମୁଗ ବାଡ଼ି ।
ଚେଳଣି ସେବାର ଅଦ୍ଭୁତ, ଦ୍ୱିଜ ବସିଲା ଭାତ ବାଢ଼ି ।
କଳର କାରଖାନା ଘରେ ପ୍ରବେଶି ଶ୍ରମିକ ବେଶରେ
ଦୀନ ଦୁଃଖୀ ଯେ ଖଟିଖିଆ ପୁଣି ଯେ ଖେତ ମଜୁରିଆ
ଏ ସବୁ ବେଶେ ପ୍ରଜାପତି ମାଟି ହୋଇଲା ଖଟି ଖଟି ।
ତା ହାତ ଅକାମୀ ହୋଇଲା ଏଣୁ ତା ମୁଣ୍ଡ ବିଗିଡ଼ିଲା ।
ଏଣୁ ତା ହୃଦେ ମହାମାଈ ପଶିଲେ ହଂସାରୂପେ ଯାଇ ।
ଧରମ ଘଟେ ଗଲେ ମାତି କାରଖାନାକୁ କଲେ ଲୁଟି ।
ବାଢ଼ିବାରୁ ବନ୍ଧୁମଥା ମାଲିକେ ହେଲେ ଘୁଣୁ ଶତ୍ରୁ,
ରେଲ ମଟର ଦେଲା ଠେଲି ମାଲିକ ମୁଣ୍ଡ ଗଲା ଝୁଙ୍କି ।
ଅକାମୀ କଲେ ଲଗାକଳ ଲଙ୍ଗଳା ହେଲେ ସର୍ବେ ନର ।
ବ୍ରହ୍ମା ଯେ ବସ୍ତ୍ର ଆଉ ମୁହିଁ ଆମକୁ ନ ରହିଲେ କେହି ।
ଆମର ବାଟକୁ ଯେ ଛାଡ଼ି ଅଣବାଟରେ ଗଲେ ମାଡ଼ି ।
ଏଣୁ ଅସୁର ସମ୍ଭବିଲେ, ହଂସାକୁ ସର୍ବେ ଆଦରିଲେ ।

* କଳର ବିକାଶ ଘଟିବାରୁ ସମାଜର ମୌଳିକ ଉତ୍ପାଦନ ଶକ୍ତିର ଲୋପ ଘଟିଲା । ଫଳତଃ ଧନାର୍ଜନ ଏକପ୍ରକାର ସୂକ୍ଷ୍ମ ଓ ଚତୁର ଚୌର୍ଯ୍ୟବୃତ୍ତିରେ ପରିଣତ ହେଲା ।

ବୁଦ୍ଧି ତା ହସ୍ତେ ଯାହା ସୃଜେ, କଳ୍ପନା କଳା ତହିଁ ସଙ୍ଗେ,
ଅଧିକ ଖଟି ଅଳ୍ପ ଖାଇ, ଦରିଦ୍ରଭାବେ ସେ ଚଳଇ ।
କୃଶ ପାଳିକ ସାର କର ନାଡ ସେ ଯାଏ ଯନ୍ତ୍ରକର ।
ବିଧାତା ପଥ ଅନୁସରି ସମାଜବାସୀ ନରନାରୀ,
ଅନ୍ନ ବସନ ଉତ୍ପାଦନ କରନ୍ତି (୧) ଯନ୍ତ୍ରଭାବେ ଜାଣ ।
ଯନ୍ତ୍ରାର୍ଥେ ଶରୀର ଧାରଣ ଏହାହିଁ ସମାଜ ନିୟମ ।
ଆଜ ଏ କଥା ଓଲଟିଲା କଳରେ ସବୁ ସୃଷ୍ଟି ହେଲା ।
ଅଳପ ଖଟି ବେଶୀ ନେବା ଭୋଗ ବିଳାସେ ମଜ୍ଜି ଯିବା
(୨) କଳର ଅଭିସନ୍ଧି ଏହି ଯନ୍ତ୍ରର ଭାବ ଏଥେ ନାହିଁ ।
କଳର ପ୍ରଭାବୁ ମାନବ ହରାଇଲଣି ମଥାହୃଦ ।
କୁଲି କନାରି କ୍ଲର୍କ ନର କଳରେ କରଇ ଆଦର ।
ଯେ ଲାଟମନ୍ତ୍ରୀ ହେଉଛନ୍ତି ସର୍କାର କଳେ ପେଣି ହୋନ୍ତି ।
(୩) ଫିତା ଫାଇଲ ଘାଣ୍ଟି ଘାଣ୍ଟି ହୃଦୟ ହରାଇ ବସନ୍ତି ।
ରଖାଠିଁ ପ୍ରଜାର ସମ୍ପର୍କ ଅମଲା କଳ କରେ ମାପ ।
ପ୍ରଜାର ହାର ଯେ ଗୁହାରି କିରାଣୀ ବୋପା ଚୁରିହୁର,
ହାକିମ କଳେ ଦଣ୍ଡ ଭରି ତହୁଁ ବାହାରେ ହୁକୁମ୍ ଜାରି ।
ଅଲକ୍ଷ୍ୟ କାଲଚକ୍ର ପରି ପ୍ରଜାଙ୍କୁ ମୋହଗ୍ରସ୍ତ କରି,
ଘୂରୁଛି ଶାସନର କଳ ମକଦମାଟି ତା ସମ୍ବଳ ।
ପ୍ରଜାଏ ସବୁ ବିଷୟରେ ସର୍କାରି କଳର ଉପରେ

୧ ଯନ୍ତ୍ରାର୍ଥେ ଜୀବନଯାତ୍ରା ବିଧେୟ ।
୨ କଳ ଜନ୍ମପରେ ଆଦର କଲେ ସେବାଭାବ ଲୁପ୍ତ ହୁଏ ।
୩ ଫିତା ଫାଇଲ ଅମଲାତନ୍ତ୍ର ସରକାରକୁ ଜଟିଳ ଓ ବେଳେ ବେଳେ ଅଚଳ କରିଦିଏ ।

ନିର୍ଭର କର ଶିଳ୍ପପର    ରୁହନ୍ତୁ ଭାଗ୍ୟକୁ ଆଦର ।
ଯାହା ହାତରେ ଉତ୍ପାଦନ    ସେ ପୁଣି କଲ୍ଲକ ବଣ୍ଟନ




ଏଣୁ ମୋ ତାମସୀ ଶକତ............
............ଯାକୁ ସେଧିବା ଶକ୍ତି କାର ? —ପୃ ୩୭

ସେ ପୁଣି ଶକ୍ତିପୀଠେ ଚଢି,    ଶାସନ କଲ୍ଲ କଳପର ।
*ଶାସ୍ତି ସର୍ଜନା ବଣ୍ଟୁଆର    ଜଣେ ନେଲ୍ଲ ଏ ତିନିଭାର ।

---

*ଉତ୍ପାଦନ, ବଣ୍ଟନ ଓ ଶାସନ ଏ ତିନି ଶକ୍ତି ପୁଞ୍ଜିଭୂତ ହେଲେ ସମାଜର ବିପଦ ଘଟେ ।

ତିନି ଶକତି ଏକଠାବେ     ରହିଲା ଯାହିଁ ପୂର୍ଣ୍ଣଭାବେ ।
ଏହାର ନାମ ଗଣତନ୍ତ୍ର     ଗରବେ ରଟିଲା ଜଗତ ।
ଅନ୍ଧାରେ ବାଡ଼ିକି ବାଡ଼େଇ     ମାନବ ହୋଇଲା ଯେ ବାଇ ।
ଭୋଟ ଲଢ଼ାଇ, ଲାଠିସଭା,     ଓକାଠ କରିବ ମନୋଲୋଭା,
ଏ ଅନ୍ଧ ଗୋଲକଧନ୍ଦାରେ     ମଣିଷ ଅଜ୍ଞ ପଡ଼ି ମରେ ।
ବ୍ରହ୍ମା ଯେ ବିଷ୍ଣୁ ଅଜ ମୁହିଁ     ଆମକୁ ନ ଚିହ୍ନିଲେ କେହି ।
ଆମର ବାଟକୁ ଛାଡ଼ିଲେ     ଅଣ ବାଟରେ ମାଡ଼ିଗଲେ ।
ଏଣୁ ମୋ ତାମସୀ ଶକତି     ଧରିଣ ଉଲଙ୍ଗ ମୂରତି,
ସଂହାର କରଇ ନିପୁର,     ଯାହାକୁ ରୋଧିବା ଶକ୍ତି କା'ର ?
ଏମନ୍ତ ମନେ ଗୁଣି ଗୁଣି     ଲୀଳାମୟୀ ତୋ ଲୀଳା ଜାଣି,
ଅନ୍ତୁଆଁ ହାଡ଼ବେଶେ ଶିବ     ତୋ ଧ୍ୱଂସକାଣ୍ଡ ଦେଖିଯିବ,

ଇତି ଶ୍ରୀ ଧର୍ମବର୍ତ୍ତିକେୟ ପ୍ରଥମ ଖଣ୍ଡେ ବିଷ୍ଣୁ-ପାର୍ବତୀ କଥୋପକଥନେ ଉତ୍ପାଦନ, ବଣ୍ଟନ ଓ ଶାସନର ପ୍ରାଚୀନ କଳ୍ପନା ବର୍ଣ୍ଣନ ନାମ ଚତୁର୍ଥ ଅଧ୍ୟାୟ ।

---

# ପଞ୍ଚମ ଅଧ୍ୟାୟ

## ଅସଲ୍ ଓ ନକଲ୍ ଗଣତନ୍ତ୍ର

୧୩ । ପ୍ରଶ୍ନ—ମାନବ ଜାତର ତାମସିକ ହିଂସାର ଉପଶମ ଘଟିବ କିପରି ?

### ବିଷ୍ଣୁ ଉବାଚ

ବିଷ୍ଣୁ ବୋଲନ୍ତି ଉମା ଶୁଣି — ଏଥୁ ଅନ୍ତରେ କଥାମାନ ।
ନିର୍ଲିପ୍ତ ଯୋଗୀଶ୍ୱର ଶିବ — ତୋ ହିଂସାକାଣ୍ଡ ଦେଖିଯିବ ।
ବୋଲିବ ଦେବୀ ଅଚ୍ଛା କଲୁ — ଦୁନିଆ ପୋଡ଼ିଜାଳି ଦେଲୁ ।
ମାନବ ସେବା ଯଜ୍ଞ ତେଜି — ଆତ୍ମସେବାରେ ଗଲୁ ମଜ୍ଜି ।
ରଜା ପରଜା ଭେଟାଭେଟ — ସର୍କାରି କଲ କଲୁ ଲୋପ ।
ଶାନ୍ତି ସର୍ଜନା ବିଷ୍ଣୁ ଆରି — ଅମଲାତନ୍ତ୍ରେ ହେଲୁ ସାରି ।
ମଣିଷ ମଣିଷ ସମ୍ପର୍କ — କଲ ଯେ କରିଦେଲୁ ଲୋପ ।
କୋଟି କୋଟି ଯେ ନରନାରୀ — ହେଲେ ଉଲଗ୍ନ ଅର୍ଦ୍ଧାହାରୀ ।
ଦେଶର ଅଳ୍ପ ଧନୀଲୋକ — ନିଜ ସ୍ୱାର୍ଥରେ ଦେଇ ଚାପ ।
ଦେଶର ଭାତଲୁଗା ଆଦି — ନିଜର ବୋଲି କଟଲେ ଦାବି ।
ଏଣୁ ତାମସୀ ହିଂସା ଆଜି — ଉଲଗ୍ନ କାଳୀବେଶ ସାଜି,
ସଂହାର କରଇ ନିପୁର — ଯାହାକୁ ରୋଧିବା ଶକ୍ତି କା'ର ?
ଏସନେ କରିବେକ ଖେଦ — ବିଷାଦ ହୃଦେ ସଦାଶିବ ।
ଏତେକବେଳେ ଦେବତାଏ — ପଡ଼ିବେ ଆସି ଶିବପାଏ ।
ବନରୁ ଜ୍ଞାନୀ ସାଧୁ ଯୋଗୀ — ଆସିଣ ହୋଇବେ ଓଳଗି ।
ବୋଲିବେ ରଖ ତ୍ରିଭୁବନ — ନୋହିଲେ ନାଶ ଗଲୁ ଜାଣ ।

ମଲେଣି ସବୁ ସେ ରାକ୍ଷସ ଏବେ ମାଆଙ୍କ କୋପ ନାଶ ।
ହିଂସାର ବିଦ୍ୟା ଆଉ କେହି ଜାଣିବା ଲୋକ ବଞ୍ଚି ନାହିଁ ।
ହିଂସାର ଆୟୁଧ ଯେ କେତେ ଆଉ କେଉଁଠି ନ ରହିଛି ।
ଦାଆ ଲଙ୍ଗଳ କୋଡ଼ କାଙ୍କ ତନ୍ତ ଚାକୁଡ଼ି ଯେ ଅରଟ,
ଏତିକି ଛଡ଼ା ଆଉ ସବୁ ହାତର ହତିଆର, ପ୍ରଭୁ,
ପୋଡ଼ି ହୋଇଛି ନାରଖାର ବୋମା ବନ୍ଧୁକ ସଙ୍ଗତର ।
ଏ ଭୂମଣ୍ଡଳେ ଯେତେ ନର ସରବେ ହେଲେଣି ସଂହାର ।
କେବଳ ବନର ନିଷାଦ ସଙ୍ଗତେ ଏହି ସାଧୁବୃନ୍ଦ
ଆଉର କୁଜା କଣା ଅନ୍ଧ ପଙ୍ଗୁ ଭିକାରି ଛୋଟା ଖଞ୍ଜ
କଣ୍ଡ୍ରା ପାଣ ମଜୁରିଆ ହାଡ଼ି ବାଉରି ଖଟିଖିଆ
ଏମାନଙ୍କରୁ ଥୋକେ ଥୋକେ ବଞ୍ଚି ଅଛନ୍ତି ଏ ପର୍ଯ୍ୟନ୍ତେ ।
ମାଆର କ୍ରୋଧ ଶାନ୍ତ କର ବଞ୍ଚାଅ ଏମାନଙ୍କୁ ହର ।
* ବ୍ରହ୍ମା ବିଷ୍ଣୁଙ୍କ ସଙ୍ଗେ ମିଳି ନୂଆ ସର୍ଜନା କର ଭୋଳି ।
ଦେଶର ଭାତ ଲୁଗା ମାଟି ଏ ଅଟେ ବିଷ୍ଣୁଙ୍କ ସମ୍ପତ୍ତି ।
ଦେଶର ଧନ ଦଉଲତ ତାର ମାଲିକ ଜଗନ୍ନାଥ ।
ଦେଶର ଯେହୁ କର୍ଣ୍ଣଧାର ଅବା ଯେ ରାଷ୍ଟ୍ରର ଈଶ୍ୱର,
ବିଷ୍ଣୁଙ୍କ ବାଟ ଅନୁସରି, ବଣ୍ଟନ ଏହୁ ଯିବେ କରି ।
ସୁବିଧ ପରାଏ ପାଳି ପ୍ରଜା ବାଣ୍ଟିବେ ଠିକେ ଭାତ ଲୁଗା ।
କେ ଆଉ କହୁ ମୋର ମୋର ବୃଥାରେ ନ ହେବ ପାଗଳ ।
ଦେଶର ଲୁଗା ଭାତ ରୋଟି ତିଆରି କଲେ ପ୍ରଜାପତି,

* ବ୍ରହ୍ମା ବିଷ୍ଣୁ ଶିବରୂପୀ ତିନାଥ କଳ୍ପନା ପଛରେ ଗାନ୍ଧି ଗଣତନ୍ତ୍ରର ଚିନ୍ତାଧାରା ରହିଛି ।

*ସମସ୍ତେ ଭାତ ଲୁଗା ପାଆନ୍ତୁ ଅଭିଆ କେହ୍ବ ନ ରହନ୍ତୁ ।
ଯେଣୁ ବିଧାତା ସର୍ଜନାରେ * କଳା କଳ୍ପନା କାର୍ଯ୍ୟ କରେ ।
ଏଣୁ ବିଧାତା ପଥ ଧରି ଯଜ୍ଞ ଭାବରେ ଶ୍ରମ କରି
ସରବେ ହୋନ୍ତୁ ନିରଳସ ଖୋଇ ପିନ୍ଧାଇ ପାନ୍ତୁ ତୋଷ ।
ଗୁଡ଼ିକଳ-କଳ ଲୁଗା-କଳ ଲୋକଙ୍କୁ କରେ ସ୍ୱାର୍ଥପର ।
କଳା କୌଶଳ ଏଥେ ନାହିଁ ଲୋକଙ୍କୁ ଅସୁର କରଇ ।
ଅଳପ ଲୋକେ ଧର୍ମ ଛାଡ଼ି ବସନ୍ତି ଭାତ ଲୁଗା ମାଡ଼ି ।
ବୋଲନ୍ତି ମୋହର ଏ ସବୁ ଏ ହେଲା ମୋର ଟଙ୍କା ଯୋଗୁଁ ।
ଏଣୁ ଯେ କୋଟି ନରନାରୀ ହୋନ୍ତି ଉଲଗ୍ନ ଅର୍ଦ୍ଧାହାରୀ ।
ଗୁଡ଼ିକଳ-କଳ ଲୁଗା-କଳ ଧ୍ୱଂସ କରନ୍ତି ମହେଶ୍ୱର,
ବ୍ରହ୍ମା ବିଷ୍ଣୁଙ୍କ ସଙ୍ଗେ ମିଳି ନୂଆ ସର୍ଜନା କର ଭୋଳି ।
ମନ୍ତ୍ରୀଏ ବ୍ରହ୍ମା ପଥ ଧରି ସର୍ଜନା କର୍ମ ଯାନ୍ତୁ କରି ।
ଦାରିଦ୍ର୍ୟ ବ୍ରତ ଦୃଢ଼େ ପାଳି ଖଟନ୍ତୁ ଦିବସ ଶର୍ବରୀ ।
ଯଜ୍ଞାର୍ଥେ ଶରୀର ଧାରଣ ଏହା କରନ୍ତୁ ମନ୍ତ୍ରୀପଣ ।
ଶରୀର ଧାରଣ ସକାଶ ରସନା ସ୍ୱାଦ ହେବ କିସ ?
ଅଲଣା ଅବଧରି କରି ତୁଚ୍ଛା ରୁଖାରେ ପେଟ ଭରି
ରସନା ଇନ୍ଦ୍ରିକୁ ନିରୋଧୀ ମନ୍ତ୍ରୀ ଦେଖାନ୍ତୁ ଧର୍ମବୁଦ୍ଧି ।
ଘଡ଼ିଏ ବିଶ୍ରାମିବା ପାଇଁ ଅଟ୍ଟାଳିକାରେ ଲାଭ ନାହିଁ ।
ସହର କୋଠାବାଡ଼ି ଛାଡ଼ି ଗ୍ରାମର କୁଡ଼ିଆ ଆଦରି
ସେବାଯଜ୍ଞରେ ଦିଅନ୍ତୁ ମନ ଦେଶର ସର୍ବ ମନ୍ତ୍ରୀଗଣ ।
ଇନ୍ଦ୍ରିୟ ନିରୋଧର ପଥେ ଚଳିଲେ କର୍ଣ୍ଣଧାର ଅଟ୍ଟେ ।

* କଳ ପ୍ରସ୍ତୁତ ଦ୍ରବ୍ୟରେ କୌଣସି କଳା ନାହିଁ ବା କଳ୍ପନା ନାହିଁ ।

ସମାଜବାସୀ ନରନାରୀ ସମାଜ ସେବା ଯିବେ କରି ।
ଲକ୍ଷ୍ୟାକୁ ନବାରିବା ପାଇଁ ଲମ୍ବ ପଣତ ଲୋଡ଼ା ନାହିଁ ।
ମଣିଷକୁ ଏ ଛଇଛାଣ୍ଡି, ଅବାଟେ କରେ ନଷ୍ଟପଷ୍ଟ ।
ଲମ୍ବ ପଣତେ ହେଲେ ଭୋଳ କାମ ହୁଅଇ ଲଗ୍ତଭର ।
ବାହାର କରିଲେ ସୁନ୍ଦର ଭିତର ରହେ କଦାକାର ।
କୌପୀନ ମାତ୍ର ସାର କରି ନିବୃତ୍ତି ପଥେ ଗତି କରି ।
ଅନ୍ନ ବସନ ଉତ୍ପାଦନେ ଖଟନ୍ତୁ ସର୍ବ ମନ୍ତ୍ରୀଗଣେ ।
ତେବେ ପ୍ରଜାଏ ସ୍ୱାର୍ଥ ଛାଡ଼ି ସଙ୍ଘାର୍ଥେ ଦେବେ ଆତ୍ମବଳୀ ।
ବଡ଼ ଆସନେ ବସି ମନ୍ତ୍ରୀ ସାନ କାମକୁ ଯାନ୍ତୁ କରି ।
ମନ୍ତ୍ରୀଏ ମେହେନ୍ତର ହୋଇ ସଙ୍ଘାର୍ଥେ କରନ୍ତୁ ସଫାଇ;
ତେବେଟି ବ୍ରାହ୍ମଣ ଚଣ୍ଡାଳେ ଭେଦ ତୁଟିବ ଅବହେଳେ ।
ତେବେଟି ସାମ୍ୟ ମୈତ୍ରୀଭାବ ସମାଜେ ହୋଇବ ସମ୍ଭବ ।
ତାମସୀହିଂସା ମାନବର ରୂପ ଧରଣି ବିକଟାଳ,
ସଂହାର କରଇ ତ୍ରିପୁର ରକ୍ଷାକର ହେ ମହେଶ୍ୱର ।

୧୪ । ପ୍ରଶ୍ନ—* ସାଧୁସନ୍ଥ ସନ୍ନ୍ୟାସୀ ଓ ଅବଧୂତମାନେ ଶିବଙ୍କ ପଥକୁ ଧରିବା ଦ୍ୱାରା ସରକାରଙ୍କ ଶାସନକ୍ଷମତାର ଅପବ୍ୟବହାରକୁ କପରି ନିବାରଣ କରି ପାରିବେ ?

ବନ୍ଧୁ ବୋଲନ୍ତି ଉମା ଶୁଣ ଏଥୁ ଅନ୍ତରେ କଥାମାନ ।
ତାମସୀ ହିଂସା ମାନବର ରୂପ ଧରଣି ବିକଟାଳ,

* ସାଧୁସନ୍ଥ ଓ ସନ୍ନ୍ୟାସୀମାନେ ଧର୍ମର ସଂକୀର୍ଣ୍ଣ ଗଣ୍ଡି ଛାଡ଼ି ଯୁଗୋଚିତ ଭାବରେ ଜନତାର ବ୍ୟାପକ ଜୀବନ ସହିତ ନିଜକୁ ମିଶାଇ ଦେଇ ପାରିଲେ ସରକାରର ସାଧୁ ସମାଲୋଚକ ହୋଇ ପାରିବେ ।

ସଂହାର କରନ୍ତେ ତ୍ରିପୁର    ଭୟେ କମ୍ପିବେ ସୁରନର ।
ଦେବତା ଜ୍ଞାନୀ ସାଧୁ ଯୋଗୀ    ଶଙ୍କର ଚରଣରେ ବନ୍ଧ,
ବୋଲିବେ ରଖ ତ୍ରିଭୁବନ    ନୋହିଲେ ନାଶଗଲ ଜାଣ ।
ମାଆର କ୍ରୋଧ ଶାନ୍ତ କର    ରକ୍ଷା କର ଏ ତନୟର ।
ଏ ସାରା ମୁଲକର ଧନ    ଭୂମି ପବନ ଜଳ ଅନ୍ନ,
ସବୁ ଅଟଇ ବସ୍ତୁଙ୍କର    କେହି ନ କହୁ ମୋର ମୋର ।
ଦେଶର ଯେ ହେବ ନାୟକ    ଧରଣୀ ଜଗନ୍ନାଥ ବାଟ
ଅନ୍ନ ବସନ ଠିକେ ବାଣ୍ଟି    ରଖିବେ ପରଜାଙ୍କୁ ସୁଖୀ ।
ଦରିଦ୍ରତମ ଯିବେ ଚାଲି    ନିବୃତ୍ତି ପଥ ଆସ୍ଥା କରି,
ଅନ୍ନ ବସନ ଉତ୍ପାଦନେ    ଲାଗିବେ ସର୍ବେ ମନ୍ତ୍ରିଗଣେ ।
ସର୍କାର କାଳେ ଭ୍ରମକର,    କ୍ଷମତା ଆସନରେ ରହି,
କର ଶାସନ ଅପସ୍ମର    ପ୍ରଜାଙ୍କୁ ଦେବ ଦୁଃଖ ଘୋର,
ଏଣୁ ସନ୍ନ୍ୟାସୀ ସାଧୁସନ୍ଥ    ତ୍ୟାଗୀ ବୈରାଗୀ ଅବଧୂତ,
ହେ ସଦାଶିବ ତୁମ ପଥ    ଧରି ସାଧନ୍ତୁ ପ୍ରଜାହିତ ।
ଯେ ହୋଇପାରେ ସର୍ବତ୍ୟାଗୀ    ସେ ସର୍ବହରା ପ୍ରତିନିଧି ।
କୋଟି କୋଟି ଯେ ନରନାରୀ    ଅର୍ଦ୍ଧଉଲଗ୍ନ ଅନାହାରୀ,
ଯାଙ୍କ ପାଇଁ ସେ ଲଢିପାରେ,    ଯେ ଧନଜନ ଛାଡ଼ିପାରେ ।
ତୁଚ୍ଛମଣି ଯେ ରାଜଗାଦି    ସବୁ ବିଳାସ ଭୋଗ ତେଜି
ରହିପାରେ ଯେ ମସାଣିରେ    ମୃତ୍ୟୁ ସଙ୍ଗେ ଯେ କ୍ରୀଡ଼ା କରେ,
କର୍ଣ୍ଣଧାରଙ୍କୁ ଠିକବାଟେ    ସେ ଏକା ଚଳାଏ ଅକଟେ ।
ଶାସକ ଶାସିତ ଫରକ,    ସେ ଏକା କରିଦାଏ ଲୋପ ।
ନିରସ୍ତ୍ର ତା ହାତମୁଠାରେ    ସବୁ ଶକତ ରହେ ପୁଲେ ।
ମହା ବିପ୍ଳବୀ ସେହି ଯୋଗୀ,    ହୋଇପାରେ ଯେ ସର୍ବତ୍ୟାଗୀ ।।
ଶାନ୍ତି ସର୍ଜନା ବାଣ୍ଟି ଆରି    ଏରୂପେ ଏହି ତନୀହାରି,

ଜନକ ଠାରେ ବାଣ୍ଟି ହୋଇ ରହିଲେ ଗଣତନ୍ତ୍ର କହି ।
ଦୁର୍ବାସା ବିଶ୍ୱାମିତ୍ର ଶୁକ ଦେବର୍ଷି ନାରଦ ସନକ
ଏ ଅବା ସାଧୁସନ୍ଥ ଯୋଗୀ ଚରିତ୍ର୍ୟ ଭୁଲିବେ ପ୍ରଜାଲାଗି ।
ହେବେଟି ଶିବୀ ହରିଶ୍ଚନ୍ଦ୍ର ପ୍ରଜାରଞ୍ଜକ ରାମଚନ୍ଦ୍ର
ଏ ଦେଶେ ଅବତାର ହେବେ ପ୍ରଜାଙ୍କୁ ପାଳିବେ ଗୌରବେ ।
ହେବେଟି ଗରିବ ଘରରେ ବ୍ୟାଧର ଅନ୍ଧାର କୁମ୍ଭାରେ
ବ୍ୟାସ ବାଲ୍ମୀକି ଜନ୍ମ ହେବେ ସତ୍ୟର ସନ୍ଧାନେ ମାତିବେ ।
ସଙ୍ଗାର୍ଥେ ଶରୀର ଧାରଣ ଏ ସତ୍ୟ ନ କର ଗ୍ରହଣ
ମାନବ ହୋଇଲୁ ଯେ ବାଇ ହିଂସା ଅସତ୍ୟେ ବୁଡ଼ିଯାଇ ।
ତେଣୁ ତାମସୀ ହିଂସା ଆଜ ମହାକାଳୀର ବେଶ ସାଜ,
ସଂହାର କରଇ ତ୍ରିପୁର ରକ୍ଷା କର ହେ ମହେଶ୍ୱର ।
ତୁମେ ତ୍ରିନାଥ ଏବେ ମିଳ ନୂଆ ସର୍ଜନା ଯାଅ କରି ।
ସର୍କାର ଠାରୁ ନାଅ କାଢି ସବୁ ଶକ୍ତିର ସୂକ୍ଷ୍ମଡୋରି ।
ତେବେ ସର୍କାରି କର୍ମଚାରୀ ସାଧୁ ସନ୍ଥଙ୍କୁ ଭୟକରି
ପ୍ରଜାଙ୍କୁ ସେବକ ଭାବରେ ସେବା କରିବେ ବିନୟରେ ।
କରାନ ହାତେ ଲାଞ୍ଚ ଦେଇ ପ୍ରଜାଏ ମୁହିଁକୁ ହରାଇ
କରିବେ ନାହିଁ ଆଉ ଅଳି ଅର୍ଜିନକଲ ଦାଅ କାଢି ।
କଚେରୀ ମାଟି ମାଡ଼ିମାଡ଼ି ଯିବା ନା ଆଉ ଚମ ଛୁଡ଼ି ।
ମନ୍ତ୍ରିଙ୍କ ଆଉ ତୋଷାମଦ କରିବେ ନାହିଁ ପ୍ରଜାବର୍ଗ ।
ପୂଜା ଅର୍ଚ୍ଚନା ଥଳିଦେଇଟି ଏ ଆବା ଯେତେ ପରିପାଟି;
ଏଥେଁ ମନ୍ତ୍ରୀଙ୍କ ମନ ତୋଷି, ନ କରିବେ କେ ତାଙ୍କୁ ଖୁସି ।
ଏଥିରେ ଅହଂକାର ବଢ଼େ ମନ୍ତ୍ରୀ ତା କାର୍ଯ୍ୟେ ହେଲା କରେ ।
ଏଣୁ ମନ୍ତ୍ରୀଙ୍କ ପୂଜାର୍ଚ୍ଚନା ବେଦ ପୁରାଣେ ଅଛୁ ମନା ।
ଯେଣୁ ମନ୍ତ୍ରୀଏ ପ୍ରଜାପତି ବ୍ରହ୍ମାଙ୍କୁ କେହି ନ ପୂଜନ୍ତି ।



କସ୍ତନ ହାତେ ଲଞ୍ଚ ଦେଇ,.........
.........ଅର୍ଜି ନକଲ୍ ଦଅ କାଢ଼ି ।

—ପୃ ୪୨

ଦେବତା ସାଧୁ ଏହ୍ମପର        କରନ୍ତେ ଶିବଙ୍କ ଗୁହାର,
ଶୁଣିଣି ସଦାଶିବ ମୋଦେ        ଚଢ଼ିବେ ମାଗୋ ତୋର ପାଦେ ।
ପ୍ରଳୟ ହିଂସାକୁ ତୋହର        ରୋଧିବେ ଅହିଂସାରେ ହର ।

ଇତଶ୍ରୀ ଧର୍ମରାଜ୍ୟେ ପ୍ରଥମ ଖଣ୍ଡେ ବମ୍ଭ ପାର୍ବତୀ କଥୋପକଥନେ
ଅସଲ୍ ଓ ନକଲ୍ ଗଣତନ୍ତ୍ର ବର୍ଣ୍ଣନ
ନାମ ପଞ୍ଚମ ଅଧ୍ୟାୟ ।

* ସ ମା ପ୍ତ *

—*—

Printed by B. K. Kar. B. A.
at the Saraswata Press, Cuttack, 1950